# ସକାମଶିବପୂଜା ।

ଶ୍ରୀ ଗୋବିନ୍ଦ ରଥଙ୍କ ଦ୍ୱାରା

ପ୍ରଥମବାର

ପ୍ରକାଶିତ ।

ଅରୁଣୋଦୟ ଯନ୍ତ୍ରାଳୟର ମେସିନ୍‌ଯନ୍ତ୍ରେ

ମୁଦ୍ରିତ ।

ଶିବ  ଶିବ

CUTTACK
Printed by N. N. Sahoo
at the Arunodoya Press.
1909.

ମୂଲ୍ୟ ଟ ୦ ୵ ଦୁଇଅଣା ।

# ସକାମଶିବପୂଜା ।


ଶ୍ରୀ ଗୋବନ୍ଦ ରଥଙ୍କ ଦ୍ୱାରା



ପ୍ରଥମବାର

ପ୍ରକାଶିତ ।

ଅରୁଣୋଦୟ ଯନ୍ତ୍ରାଳୟର ମେସିନ୍‌ଯନ୍ତ୍ରେ

ମୁଦ୍ରିତ ।


ଶିବ  ଶିବ


CUTTACK
Printed by N. N. Sahoo
at the Arunodoya Press.
1909.

ମୂଲ୍ୟ ଟ ୦ ୵ ଦୁଇଅଣା ।

ଷଡାମ ଦୈବପୂଜାର

# ସୂଚିପତ୍ର ।

—:o:—

ସଂପୂର୍ଣ୍ଣ !

# ସକାମ ଶିବପୂଜା ।

## ନାରଦ ଉବାଚ ।

ଧର୍ମାର୍ଥ କାମମୋକ୍ଷଣାଂ ସାଧନଂ ପରମଂ ଶ୍ରୁତଂ ।
ସର୍ବଂ କଥୟ ମେ ଶମ୍ଭୋ କଲୌ ସର୍ବାର୍ଥ ସିଦ୍ଧିଦଂ । ୧ ।

ଅର୍ଥ—ନାରଦ କହିଲେ ହେ ଶମ୍ଭୋ ଏହି କଳିଯୁଗରେ ସମସ୍ତ ସିଦ୍ଧିପ୍ରଦ ଓ ଧର୍ମ ଅର୍ଥ କାମ ମୋକ୍ଷର ସାଧନକାରୀ ଏବଂ ଶ୍ରୁତକର ରହସ୍ୟ ଯହ ଥାଏ ତାହା କହନ୍ତୁ । ୧ ।

## ଈଶ୍ୱର ଉବାଚ ।

ଶୃଣୁ ନାରଦ ବକ୍ଷ୍ୟାମି ଶିବପୂଜାବିଧାନକଂ ।
ଯସ୍ୟାନୁଷ୍ଠାନମାତ୍ରେଣ ସର୍ବସିଦ୍ଧିଂ ଲଭେନ୍ନରଃ । ୨ ।

ଅର୍ଥ—ଈଶ୍ୱର କହିଲେ ହେ ନାରଦ ଶିବ ପୂଜାର ବିଧାନ କହୁଅଛୁ ଶୁଣ । ଯାହାର ଅନୁଷ୍ଠାନ ମାତ୍ରରେ ମନୁଷ୍ୟ ସକଳ ସିଦ୍ଧି ଲାଭକରେ । ୨ ।

ଶୁଦ୍ଧଂ ମୃଦଂ ସମାନୀୟ ପୁନଃ ଶୋଧ୍ୟ ବିଶେଷତଃ ।
ଲିଙ୍ଗାକାରଂ ତତଃ କୁର୍ଯ୍ୟାତ୍ ଯଥୋକ୍ତ ବିଧିନା ପୁମାନ୍ । ୩

ଅର୍ଥ—[illegible]ଶୁଦ୍ଧମୃତ୍ତିକା ଆଣି ତାକୁ ଉତ୍ତମରୂପେ ସୋଧି ତହିଁରୁ କୁଟା ଗୋଡି ବାହାର କରିଦେଇ ଲିଙ୍ଗ ଆକାରରେ ଗଢ଼ିବ । ୩ ।

ଶୁଚିର୍ଭୂତ୍ୱା ସୁବିଧାନେନ ଲିଙ୍ଗଂ ପାର୍ଥିବମୁତ୍ତମଂ ।
ଅଖଣ୍ଡଂ କାରୟେତ୍ ଦ୍ୱିଜହ୍ୟାଦ୍ ବକ୍ଷ୍ୟମାଣୈଶ୍ଚ ନାମଭିଃ । ୪ ।

ଅର୍ଥ—ସେହି ଉତ୍ତମ ପାର୍ଥିବ ଲିଙ୍ଗକୁ ଅଖଣ୍ଡ କରି ଗଢ଼ି ଉତ୍ତମ ବିଧିରେ ପୂଜା କରିବ । ଗଢ଼ିବା ମନ୍ତ୍ର ଓ ପୂଜାମନ୍ତ୍ର ଆଗରେ କହିବୁଁ । ୪ ।

ମୃଦାହରଣଂ ହରସ୍ଚୈଂ ପ୍ରତିଷ୍ଠା ଧ୍ୟାନମେବ ଚ ।
ସ୍ନାପନଂ ପୂଜନଂ ଚୈବ କ୍ଷମସ୍ୱେତ ବିସର୍ଜନଂ । ୫ ।
ହରସ୍ତ ମହେଶ୍ୱର ଶ୍ଚୈବ ଶୂଳପାଣିଃ ପିନାକଧୃକ୍ ।
ଶିବଃ ପଶୁପତିଶ୍ଚୈବ ମହାଦେବୋ ହ୍ୟନୁକ୍ରମାତ୍ । ୬ ।

ଅର୍ଥ—ହର ନାମଧର ମୃତ୍ତିକା ଆଣିବ, ମହେଶ୍ୱର ନାମଧର ଗଢ଼ିବ, ଶୂଳପାଣି ନାମଧର ପ୍ରତିଷ୍ଠା କରିବ, ପିନାକଧୃକ୍ ନାମଧର ଧ୍ୟାନ କରିବ, ଶିବ ନାମରେ ସ୍ନାପନ, ପଶୁପତି ନାମରେ ପୂଜନ, ଓ ମହାଦେବ ନାମଧର କ୍ଷମା ପ୍ରାର୍ଥନା କରିବ । ୫ । ୬ ।

ଏବମର୍ଚ୍ଚୟତଃ ପୁଂସଃ ପାର୍ଥିବ ଲିଙ୍ଗମୁତ୍ତମଂ ।
ମାସଦ୍ୱୟେଣ ସିଦ୍ଧିଃ ସ୍ୟାନ୍ନାତ୍ର କାର୍ଯ୍ୟାବିଚାରଣା । ୭ ।

ଅର୍ଥ—ହେ ନାରଦ ଏହିପରି ଉତ୍ତମ ପାର୍ଥିବ ଲିଙ୍ଗପୂଜା କରୁଥିବା ପୁରୁଷର ଦୁଇମାସରେ ଫଳସିଦ୍ଧି ହୁଏ, ଏଥିରେ କିଛିମାତ୍ର ସଂଶୟ ନାହିଁ । ୭ ।

ନାରଦ ଉବାଚ ।

କେନ ବା ପୂଜ୍ୟତେ ଦେବଃ ପଦାର୍ଥେନ ବିଶେଷତଃ ।
କେନ ବା ବିଧିନା ତତ୍ର ଯସ୍ମାତ୍ ସିଦ୍ଧିଂ ଲଭେନ୍ନରଃ । ୮ ।

ଅର୍ଥ—ନାରଦ କହିଲେ କ କ ବିଶେଷ ପଦାର୍ଥରେ ମହାଦେବଙ୍କର ପୂଜା ହୁଏ ବା କେଉଁ ବିଧିରେ ପୂଜାକଲେ ନର ସିଦ୍ଧି ଲଭନରେ ତାହା କହନ୍ତୁ । ୮ ।

ଈଶ୍ୱର ଉବାଚ ।

କମଳୈର୍ବିଲ୍ୱପତ୍ରୈଶ୍ଚ ଶତପତ୍ରୈସ୍ତଥା ପୁନଃ ।
ଶଙ୍ଖୀପୁଷ୍ପୈ ସ୍ତଥା ଦେବଂ ଲକ୍ଷ୍ମୀ କାମୋ ଭବେଦ୍ଦ୍ୱା । ୯ ।

ଅର୍ଥ—ଈଶ୍ୱର କହିଲେ ଲକ୍ଷ୍ମୀକାମନାକାଂକ୍ଷୀ ମନୁଷ୍ୟ କମଳ ବିଲ୍ୱ-ପତ୍ର, ଶତଦଳ ପଦ୍ମ ଓ ଶଙ୍ଖୀ ପୁଷ୍ପରେ ମହାଦେବଙ୍କୁ ପୂଜାକରିବ ଶଙ୍ଖୀ ପୁଷ୍ପ ଅର୍ଥାତ୍ ଶଙ୍ଖ ଆକାର ଯେଉଁ ଫୁଲ ହୁଏ ତାହାର ଅପର ନାମ ଶଙ୍ଖାହୁଳୀ ।

ଏତୈଶ୍ଚ ଲକ୍ଷସଂଖ୍ୟାକୈ ର୍ଲକ୍ଷ୍ମୀଃସ୍ୟାନ୍ନାତ୍ର ସଂଶୟଃ । ୧୦ ।

ଅର୍ଥ—ହେ ନାରଦ ଏହି ସବୁ ପଦାର୍ଥ ମଧ୍ୟରୁ ଯେ କୌଣସି ପଦାର୍ଥ ଲକ୍ଷ ସଂଖ୍ୟାରେ ପୂଜାକଲେ ନିଶ୍ଚୟ ଲକ୍ଷ୍ମୀ ପ୍ରାପ୍ତହେବ ଏଥିରେ ସନ୍ଦେହ ନାହିଁ । ୧୦ ।

ଆୟୁଃକାମୋ ନରେବ୍‌ଯୋବୈ ଦୂର୍ବାଭିଃ ପୂଜନଂ ଚରେତ୍ । ୧୧ ।

ଅର୍ଥ—ହେ ଋଷିଶ୍ରେଷ୍ଠ ଆୟୁର୍ବୃଦ୍ଧିକାମୀ ନର ଲକ୍ଷ ପରିମିତ ଦୂର୍ବାକାଣ୍ଡରେ ମହାଦେବଙ୍କ ପୂଜା କରିବ । ୧୧ ।

ପୁତ୍ରକାମୋ ନରେହ୍ୟସ୍ତୁ ଧତ୍ତୂର କୁସୁମୈର୍ନରଃ ।
ରକ୍ତଦଣ୍ଡସ୍ତ ଧତ୍ତୂରଃ ପୂଜନେ ଶୁଭଦଃ ସ୍ମୃତଃ । ୧୨ ।

ଅର୍ଥ—ପୁତ୍ରକାମୀ ମାନବ ଧୂତୁରଫୁଲରେ ପୂଜା କରିବ । କିନ୍ତୁ ଯେଉଁ ଧୂତୁରଫୁଲର ନାଡ଼ ରକ୍ତବର୍ଣ୍ଣ ହୋଇଥିବ ସେଥିରେ ପୂଜା କଲେ ଶିବ ବିଶେଷ ଶୁଭଦାୟକ ହୁଅନ୍ତି । ୧୨ ।

ଅଗସ୍ତି କୁସୁମୈର୍ଯସ୍ତୁ ତସ୍ୟ ବୈ ବପୁଜଂ ଲକ୍ଷଃ । ୧୩ ।

ଅର୍ଥ—ବପୁଜୟକାମୀ ମନୁଷ୍ୟ ଅଗସ୍ତିକୁସୁମରେ ପୂଜା କରିବ । ୧୨ ।

ଭୁକ୍ତି ମୁକ୍ତିଫଳଂ ତସ୍ୟ ତୁଳସୀ ପୂଜନଂ ଚରେତ୍ । ୧୪ ।

ଅର୍ଥ—ଭୋଗ ଆଉ ମୋକ୍ଷ କାମୀ ବ୍ୟକ୍ତି ଲକ୍ଷ ପରିମିତ ତୁଳସୀ ପତ୍ରରେ ପୂଜାକଲେ ନିଶ୍ଚୟ ଭୁକ୍ତି ମୁକ୍ତି ଫଳ ଲାଭ କରିବ । ୧୪ ।

ଅର୍କପୁଷ୍ପୈଃ ପ୍ରତାପଶ୍ଚ କୁବ୍ଜକହ୍ଲାରକୈସ୍ତଥା ।
ଜବାକୁସୁମପୂଜା ତୁ ଶତ୍ରୂଣାଂ ମୃତ୍ୟୁଦା ସ୍ମୃତା । ୧୫ ।

ଅର୍ଥ—ହେ ନାରଦ ଅର୍କ ପୁଷ୍ପରେ ପୂଜାକଲେ ପ୍ରତାପ ବଢ଼େ । କୁବ୍ଜ-ଅର୍ଥାତ୍ ଗୋଟିଏ ସୁଗନ୍ଧ ପୁଷ୍ପ, ଚମ୍ପା, ଅଶୋକ, ବା ସେବତୀ ପୁଷ୍ପରୁ ଗୋଟିଏ ଦେଇ ପୂଜାକଲେ ମଧ୍ୟ ପ୍ରତାପ ବୃଦ୍ଧି ହୁଏ । କହ୍ଲାର ଅର୍ଥାତ୍ ଶ୍ୱେତୋତ୍ପଳରେ ପୂଜା କଲେ ମଧ୍ୟ ବିଶେଷ ପ୍ରତାପ ବଢ଼େ । ଆଉ ଜବାପୁଷ୍ପରେ ପୂଜାକଲେ ଶତ୍ରୁନାଶ ହୁଏ । ୧୫ ।

ଶ୍ୱେତୋଚ୍ଚାଟକାମୋ ହି କରବୀରୈର୍ବା ଚରେତ୍ ।
ବନ୍ଧୂକୈର୍ଭୂଷଣାବାପ୍ତି ର୍ଜାତ୍ୟା ବାହନସମ୍ଭବଃ । ୧୬ ।

ଅର୍ଥ—ଶ୍ୱେତଉଚ୍ଚାଟକାମନାକାରୀ ମାନବ କରବୀରପୁଷ୍ପରେ ପୂଜା କରିବ । ଆଉ ବନ୍ଧୂକ ପୁଷ୍ପରେ ପୂଜା କଲେ ଅଳଙ୍କାର ମିଳେ । ଜାଇ ଓ ମାଳତୀ ପୁଷ୍ପରେ ପୂଜାକଲେ ବାହନ ମିଳେ । ୧୬ ।

ଅତସୀ କୁସୁମୈରେବ ବିଷ୍ଣୁବଲ୍ଲଭତାମିୟାତ୍ ।
ଶମୀପତ୍ରୈସ୍ତଥା ମୁକ୍ତିଃ ପ୍ରାପ୍ୟତେ ପୁରୁଷେଣ ଚ । ୧୭ ।

ଅର୍ଥ—ଅତସୀ କୁସୁମରେ ଶିବପୂଜା କଲେ ବିଷ୍ଣୁଭକ୍ତି ଲାଭକରେ ଆଉ ଯେଉଁ ପୁରୁଷ ଶମୀପତ୍ରରେ ଶିବ ପୂଜାକରେ ସେ ମୁକ୍ତିଲାଭ କରେ । ୧୭ ।

ମଲ୍ଲିକାକୁସୁମୈର୍ଦେବଃ ଶ୍ରିୟଂ ଶୁଭତସ୍ୱଂ ଶିବଃ ।
ଯୂଥିକା କୁସୁମୈଃ ଶସ୍ୟଂ ଗୃହଂ ନୈବ ବିମୁଞ୍ଚତି । ୧୮ ।

ଅର୍ଥ—ମଲ୍ଲୀଫୁଲରେ ଶିବ ପୂଜାକଲେ ଶୁଭତସ୍ୱ ଲକ୍ଷ୍ମୀ ମିଳେ । ଯୂଥି ପୁଷ୍ପରେ ପୂଜାକଲେ ଧାନ୍ୟାଦି ଶସ୍ୟରେ ଗୃହ ପୂର୍ଣ୍ଣହୁଏ । ୧୮ ।

କର୍ଣ୍ଣିକାରୈ ସ୍ତଥା ବସ୍ତ୍ର ସମ୍ପତ୍ତିର୍ଜାୟତେ ନୃଣାଂ ।
ନିର୍ଗୁଣ୍ଡୀ କୁସୁମୈର୍ଲୋକେ ମନୋ ନିର୍ମଳତାଂ ବ୍ରଜେତ୍ । ୧୯

ଅର୍ଥ—କର୍ଣ୍ଣିକାର ଅର୍ଥାତ୍ ସୁନାରୀ ଫୁଲରେ ପୂଜାକଲେ ବହୁତ ବସ୍ତ୍ର ଲାଭହୁଏ । ନିର୍ଗୁଣ୍ଡୀ ଫୁଲରେ ପୂଜାକଲେ ସର୍ବଦା ମନ ନିର୍ମଳ ରହେ । ୧୯ ।

ଯତ୍ର କୁସୁମୈସ୍ତୁ ଏତୈସ୍ତ ଲଭେନ୍ନୈବ ଶିବାର୍ଚ୍ଚନଂ ।
ଚମ୍ପକଂ କେତକଂ ହିତ୍ୱା ଅନ୍ୟତ୍ର ସର୍ବଂ ଶିବାର୍ପୟେତ୍ । ୨୦

ଅର୍ଥ—ଯେବେ ଏସବୁ ଫୁଲ ନ ମିଳେ ତେବେ ଚମ୍ପା ଓ କେତକୀ ଫୁଲକୁ ଛାଡ଼ି ଯେ କୌଣସି ଫୁଲରେ ଶିବପୂଜା କରିବ ।

ପୁଷ୍ପାଣି ଫଲଜାତାନି ମୂର୍ତ୍ତିଦାନି ନ ସଂଶୟଃ ।
ସୁଗନ୍ଧା କୁସୁମାନୀହ ଷଣ୍ଢୂଣାଂ ମୃତ୍ୟୁଦାନି ଚ । ୨୦ ।

ଅର୍ଥ— ଭଲ ପୁଷ୍ପରେ ଶିବପୂଜା କଲେ ନିଶ୍ଚୟ ମୁକ୍ତିଲାଭ ହେବ ଏଥିରେ ସନ୍ଦେହ ନାହିଁ । ଅଉ ସ୍ଥଳପଦ୍ମରେ ଶିବପୂଜା କଲେ ଶତ୍ରୁ ନାଶହେବ ଏ ନିଶ୍ଚୟ । ୧୦ ।

ଅତଃପରଂ ତୁ ଧାନ୍ୟାନାଂ ଫଲଂମେ ଶୃଣୁ ସତ୍ତମ ।
ତଣ୍ଡୁଳାରୋପଣେ ନୃଣାଂ ଲକ୍ଷ୍ମୀବୃଦ୍ଧିଃ ପ୍ରଜାୟତେ । ୧୧ ।

ଅର୍ଥ—ହେ ସତ୍ତମ ନାରଦ ଏବେ ଧାନ୍ୟମାନଙ୍କର ଫଳ ଶୁଣ । ଶିବଙ୍କଠାରେ ତଣ୍ଡୁଳ ଅର୍ପଣ କଲେ ନିଶ୍ଚୟ ଲକ୍ଷ୍ମୀ ବୃଦ୍ଧିହୁଏ । ୧୧

ଷଟ୍କେନୈବ ତୁ ପ୍ରସ୍ଥାନାଂ ତଦର୍ଦ୍ଧେନ ତଥା ପୁନଃ ।
ପଲଦ୍ୱୟଂ ତଥା ତତ୍ର ଲକ୍ଷମାନମୁଦାହୃତଂ । ୧୨ ।

ଅର୍ଥ—ତଣ୍ଡୁଳର ଲକ୍ଷସଂଖ୍ୟା ଏହି ପରିହୁଏ ଯଥା—ଛ ଅଢ଼ ଘନପ୍ରସ୍ଥର ସାଙ୍ଗେ ୨ ଦୁଇପଲ ହେଲେ ଏକ ପରିମାଣ ହେଲା ଏହିପରି ଲକ୍ଷସଂଖ୍ୟା ତଣ୍ଡୁଳର ହୁଏ । ୧୨ ।

ପୂଜା ରୁଦ୍ରବିଧାନେନ କୃତ୍ୱା ବସ୍ତ୍ରଂ ସୁସୁନ୍ଦରଂ ।
ଶିବୋପରି ନ୍ୟସେଦ୍ଦକ୍ଷ ତଣ୍ଡୁଳାର୍ପଣମୁତ୍ତମଂ । ୧୩ ।

ଅର୍ଥ—ଶିବଙ୍କର ପୂଜାବିଧିଅନୁସାରେ ପୂଜାକରି ତାହାଙ୍କ ଉପରେ ଅତି ସୁନ୍ଦର ଖଣ୍ଡିଏ ନୂତନ ବସ୍ତ୍ର ନ୍ୟାସକରି ତାଉପରେ ତଣ୍ଡୁଳ ଅର୍ପଣ କରିବ । ୧୩ ।

ଉପରି ଶ୍ରୀଫଲଂ ତ୍ୱେକଂ ଗନ୍ଧପୁଷ୍ପାଦିଭିସ୍ତଦା ।
ତିଳାନାଂ ଚ ତଥା ଲକ୍ଷଂ ମହାପାତକନାଶନଂ । ୧୪ ।

ଅର୍ଥ—ତତୁପରି ଗୋଟିଏ ଶ୍ରୀଫଳ ରଖି ବିଧି ଅନୁସାରେ ଗନ୍ଧପୁଷ୍ପ ଧୂପଦୀପ ଦେଇ ଉର୍ଦ୍ଧ୍ୱ ପ୍ରସ୍ଥରେ ଲକ୍ଷ ତିଳ ଚଢ଼ାଇଲେ ନିଶ୍ଚୟ ମହାପାତକ ନାଶହେବ । ୧୪ ।

ଏକାଦଶପଲେନୈବ ଲକ୍ଷମାନମୁଦାହୃତଂ ।
ମହାପାତକଜଂ ଦୁଃଖଂ ନଶ୍ୟନ୍ତି ତତ୍କ୍ଷଣାଦ୍ଧ୍ରୁବ । ୧୫ ।

ଅର୍ଥ—ଏଗାର ପଲ ପରିମାଣରେ ତିଳର ଲକ୍ଷସଂଖ୍ୟା ହୁଏ ।

ଏହି ବର୍ଷରେ ଜଳ ଚଢ଼ାଇଲେ ମହା ପାତକ ଜନିତ ଦୁଃଖ ଚୟଣାରୁ ନଷ୍ଟହେବ ଏହା ଜାଣିବୁ । ୧୫ ।

ଯବପୂଜା ତଥା ପ୍ରୋକ୍ତା ଲକ୍ଷେଣ ପରମା ଶୁଭା ।
ପ୍ରସ୍ଥାନାମଷ୍ଟକଂ ଚୈବ ପ୍ରସ୍ଥାର୍ଦ୍ଧ ସଯୁତଂ ପୁନଃ ।
ପଲଦ୍ବୟଯୁତଂ ତତ୍ର ମାନମେତତ୍ପୁରାତନଂ । ୧୬ ।

ଅର୍ଥ—ସେହିପରି ସାଢ଼େ ଅଠପ୍ରସ୍ଥ ଯବ ସହିତରେ ଦୁଇପଲ ଯବ ସଯୋଗ କଲେ ଏକ ପରିମାଣ ହୁଏ । ଏହି ବର୍ଷରେ ଲକ୍ଷ ଯବ ଚଢାଇଲେ ସର୍ବସୁଖ ଲାଭକରେ । ୧୬ ।

ଯବପୂଜା ତଥା ପ୍ରୋକ୍ତା ସ୍ୱର୍ଗେ ସୁଖବିବର୍ଦ୍ଧିନୀ ।
ପ୍ରାଜାପତ୍ୟଂ ବ୍ରାହ୍ମଣାନାଂ କର୍ତ୍ତବ୍ୟଂ ଫଳ ମୀପ୍ସୁନା । ୧୭ ।

ଅର୍ଥ—ଯେଉଁ ଯବପୂଜାର ବିଧାନ କହିଲୁଁ ଏହି ବିଧିରେ ଯବ ଦ୍ୱାରା ଶିବପୂଜାକଲେ ସ୍ୱର୍ଗସୁଖ ବର୍ଦ୍ଧିତ ହୁଏ । ଅତ୍ର ପୂର୍ଣ୍ଣଫଳ-କାମୀଜନ ବ୍ରାହ୍ମଣ ସହିତ ପ୍ରାଜାପତ୍ୟ ବ୍ରତ କରିବ । ୧୭ ।

ଗୋଧୂମାନାଂ ତଥାପୂଜା ପ୍ରଶସ୍ତା ଋଷିସତ୍ତମ ।
ସନ୍ତତିର୍ବର୍ଦ୍ଧତେସ୍ୟାପି ଯଦି ଲକ୍ଷାବଧିଃ କୃତା । ୧୮ ।

ଅର୍ଥ—ହେ ଋଷିସତ୍ତମ ସେହିପରି ଲକ୍ଷାବଧି ଗହମରେ ଶିବପୂଜା କଲେ ସନ୍ତତିବୃଦ୍ଧି ହୁଏ । ୧୮ ।

ଦ୍ରୋଣାର୍ଦ୍ଧେନ ଭବେଲ୍ଲକ୍ଷଂ ବିଧାନଂ ବିଧିପୂର୍ବକଂ ।
ପୂଜନଞ୍ଚ ବ୍ରାହ୍ମଣାନାଂ ହି ପ୍ରାଜାପତ୍ୟଂ ଭବେଦ୍ଧ । ୧୯ ।

ଅର୍ଥ—ଅର୍ଦ୍ଧଦ୍ରୋଣ ଗହମରେ ଏକ ପରିମାଣ ହୁଏ । ଏହି ପରି-ମାଣ ଲକ୍ଷସଂଖ୍ୟାବିଧିରେ ପୂଜା କରିବ ଓ ବ୍ରାହ୍ମଣ ସହିତ ଅପେ ପ୍ରାଜାପତ୍ୟ ବ୍ରତ କରିବ । ୧୯ ।

ମୁଦ୍ଗାନାଂ ପୂଜନାଦେବ ଶିବୋଯଚ୍ଛତି ବୈ ସୁଖଂ । ୨୦ ।

ଅର୍ଥ—ମୁଗରେ ପୂଜାକଲେ ଶିବ ଜନ୍ତୁ ସୁଖ ପ୍ରଦାନ କରନ୍ତି ।

ପ୍ରସ୍ଥାନାଂ ସପ୍ତବେଦୈନୈବ ପ୍ରସ୍ଥାର୍ଦ୍ଧେନ ତଥା ପୁନଃ ।
ପଳଦ୍ୱୟଯୁକ୍ତେନୈବ ଲକ୍ଷମେକଂ ଚତୁର୍ଦ୍ଧାଃ । ୩୧ ।

ଅର୍ଥ—ସାଢ଼େ ସାତପ୍ରସ୍ଥରେ ଦୁଇପଲ ଯୋଗକଲେ ଏକ ହୁଏ । ଏହିପରିମାଣରେ ମୁଦ୍ଗର ଲକ୍ଷ ସଂଖ୍ୟାକୁ ପଣ୍ଡିତମାନେ କହିଅଛନ୍ତି ।

ମାଷାଣାଂ ଚ ତଥା ପ୍ରୋକ୍ତା ସ୍ୱେଦଦାଙ୍ଗଂ ବଦ୍ୱେଦ ସା ।
ପ୍ରସ୍ଥାନାମଷ୍ଟବେଦୈନୈବ ଲକ୍ଷମେକଂ ପ୍ରକୀର୍ତ୍ତିତୈଃ । ୩୨ ।

ଅର୍ଥ—ଏହିପରି ବ୍ରୀହିରେ ପୂଜାକଲେ ସର୍ବଦୋଷ ନାଶହୁଏ । ତନ୍ଦୁଳ ଅଠପ୍ରସ୍ଥରେ ଲକ୍ଷପରିମିତ ହୁଏ ଏହା ପ୍ରାଚୀନ ମତ । ୩୨ ।

ପ୍ରିୟଙ୍ଗୁ ପୂଜନଂ ଦେବ ସର୍ବାଧ୍ୟକ୍ଷେ ପରାତ୍ମକ ।
ଧର୍ମାର୍ଥବର୍ଦ୍ଧନାପ୍ୟେଷ ପୂଜା ସର୍ବସୁଖାବହା । ୩୩ ।

ଅର୍ଥ—ପ୍ରିୟଙ୍ଗୁ ଧାନ୍ୟରେ ସର୍ବାଧ୍ୟକ୍ଷ ପରମାତ୍ମା ଶିବଙ୍କୁ ପୂଜାକଲେ ଧର୍ମ ଓ ଅର୍ଥର ବୃଦ୍ଧିହୁଏ ଆଉ ସମସ୍ତ ସୁଖମିଳେ । ୩୩ ।

ପ୍ରସ୍ଥମେକଂ ଚ ଯତ୍ପ୍ରୋକ୍ତଂ ଲକ୍ଷମେକଂ ପ୍ରକୀର୍ତ୍ତିତୈଃ ।
ବ୍ରହ୍ମଭୋଜ୍ୟଂ ତଥା ପ୍ରୋକ୍ତମର୍ବାଣାଂ ସଂଖ୍ୟୟା ମୁନେ । ୩୪ ।

ଅର୍ଥ—ଯାହାକି ଏକ ପ୍ରସ୍ଥର ଲକ୍ଷ ସଂଖ୍ୟା ପରିମାଣ କୁହାଯାଇଅଛି ଆଉ ମଧ୍ୟ ସ୍ୱସ୍ତିକ ପରିମାଣ ଯାହାକି କୁହାଯାଇଛି ଏ ସବୁ ଦ୍ୱାଦଶ ପରିମିତ ବ୍ରାହ୍ମଣର ଭୋଜ୍ୟ ହୋଇଦେବ ।୩୪

ସର୍ଜ୍ଜପୂଜନଂ ତସ୍ୟ ଶତ୍ରୋର୍ମୃତ୍ୟୁକରଂ ସ୍ମୃତଂ ।
ପ୍ରସ୍ଥେନ ପଳଯୁକ୍ତେନ ଲକ୍ଷମେକଂ ତଥା ସ୍ମୃତଂ । ୩୫ ।

ଅର୍ଥ—ସର୍ଜ୍ଜରେ ପୂଜାକଲେ ଯେ ଶତ୍ରୁର ମୃତ୍ୟୁହୁଏ ଏ କଥାପୂର୍ବରୁ କୁହାଯାଇଅଛି, ତନ୍ଦୁ ଏକପ୍ରସ୍ଥରେ ଏକପଳ ଯୁକ୍ତକଲେ ଏକସଂଖ୍ୟାହୁଏ ଏହି ତଥ୍ୟରେ ଲକ୍ଷ ସଂଖ୍ୟାରେ ପୂଜାକଲେ ସେହିଫଳ ହେବ ।୩୫

ସର୍ଷପାଣାଂ ତଥା ଲକ୍ଷଂ ପଲୈର୍ବିଂଶତିସଂଖ୍ୟୟା ।
ତେଷାଂ ଚ ପୂଜନାଦେବ ଶତ୍ରୋର୍ମୃତ୍ୟୁର୍ବୁବାହୁତଃ ।
ଦ୍ୱିପ୍ରସ୍ଥାଣାଂ ଶ୍ଳେଷ୍ମନଂ ତୈଶ ଶତମେକୋତ୍ତରଂ ସ୍ମୃତଂ । ୩୬ ।

ଅର୍ଥ—୬୦ପଳରେ ଏକସଂଖ୍ୟା ମାନ ଏହିକ୍ରମରେ ଲକ୍ଷ ସଂଖ୍ୟକ ଷୋଡ଼ଶରେ ଶିବପୂଜା କଲେ ଈପ୍ସିତ ଶତ୍ରୁର ମୃତ୍ୟୁହେବ । ଅନ୍ତୁ ୧୦୧ ଜଣ ବ୍ରାହ୍ମଣ ଭୋଜନ କରାଇବ । ୩୬ ।

ମାସ୍ୱତ୍ରସମ୍ଭବା ପୂଜା ଶତ୍ରୋର୍ନାଶକରୀ ସ୍ମୃତା । ୩୭ ।
ଅତୋଽପି କଥୟେ ଧାନ୍ୟୈଃ ପୂଜନଂ ଶଙ୍କରସ୍ୟ ଚ ।
କର୍ପୂରୈ ରଞ୍ଜିତଂ ଧାନ୍ୟଂ କଥଥଂ ସ୍ୱର୍ପୟେଚ୍ଛିବେ । ୩୮ ।

ଅର୍ଥ—ମସ୍ତ୍ରତ ସମ୍ଭବ ପୂଜା ଶତ୍ରୁନାଶ କାରକ ହୁଏ । ୩୭ । ଅତଏବ ନାନାପ୍ରକାର ଧାନ୍ୟରେ ଶିବପୂଜା କରିବ । ଏନ୍ତୁ ସେହି ଧାନ୍ୟକୁ କର୍ପୂର ପ୍ରଭୃତି ସୁଗନ୍ଧ ଦ୍ରବ୍ୟରେ ରଞ୍ଜିତ କରି ଅର୍ପଣ କରିବ । ୩୮ ।

ରଙ୍ଗୈ ର୍ନାନାବିଧୈଶ୍ଚୈବ ରଞ୍ଜୟିତ୍ୱାର୍ପୟେଚ୍ଛିବଂ ।
ନାନାସୁଖକରୀ ପୂଜା ଦ୍ୱେଷା ଚ ଋଷିସତ୍ତମ । ୩୯ ।

ଅର୍ଥ—ହେ ଋଷିସତ୍ତମ ଯେ ନାନାପ୍ରକାର ଧାତୁଦ୍ରବ୍ୟରେ ରଞ୍ଜିତ କରି ଶିବଙ୍କୁ ପୂଜାକରେ ସେ ବହୁ ପ୍ରକାର ସୁଖଲାଭ କରେ ।

ଇତ୍ୟେତଦ୍ବଚନଂ ଶ୍ରୁତ୍ୱା ନାରଦଃ ପ୍ରତ୍ୟଭାଷତ ।
ସ୍ୱାମିନ୍ ସର୍ବ ଜଗନ୍ନାଥ ସର୍ବଜ୍ଞସ୍ତ୍ୱଂ ସଦାଶିବଃ ।
ଯଦ୍ୟଃ କ୍ଷୀରାଦିଧାରାଣାଂ କଥୟସ୍ୱ ଫଳଂ ବଦେ । ୪୦ ।

ଅର୍ଥ—ଏହି ସବୁକଥା ଶୁଣି ନାରଦ କହିଲେ ସ୍ୱାମିନ୍ ତୁମ୍ଭେ ଜଗତର ନାଥ ଅଟ ସର୍ବଜ୍ଞ ଏବ ମଙ୍ଗଳରୂପୀ କହି ଅତଏବ ଜଳ ଦୁଗ୍ଧ ଆଦି ଧାର ଦାନର ଯେ ଫଳ ତାହା କହ । ୪୦ ।

ସଦାଶିବ ଉବାଚ ।

ଜ୍ୱରପ୍ରଳାପଶାନ୍ତ୍ୟର୍ଥଂ ଜଳଧାରା ଶିବପ୍ରିୟା ।
ଘୃତଧାରା ଶିବେ କାର୍ଯ୍ୟା ଯାବନ୍ମନ୍ତ୍ରସହସ୍ରକଂ ।
ତଦା ବଂଶସ୍ୟ ବିସ୍ତାରୋ ଜାୟତେ ନାତ୍ର ସଂଶୟଃ । ୪୧ ।

ଅର୍ଥ—ମହାଦେବ କହିଲେ ଜଳରେ ଶିବଙ୍କୁ ଅଭିଷେକ କଲେ

ଜ୍ୱରରୋଗ ଶାନ୍ତହୁଏ । ସବସ୍ତ୍ର ମନ୍ତ୍ର ପଢ଼ି ଘୃତରେ ଅଭିଷେକ କଲେ ବଂଶ ବୃଦ୍ଧିହୁଏ ଏଥିରେ ସଂଶୟ ନାହିଁ । ୪୧ ।

ପ୍ରମେହରୋଗଶାନ୍ତ୍ୟର୍ଥଂ ପ୍ରାପ୍ନୁୟାତ୍ ମନସୀପ୍ସିତଂ ।
କେବଳଂ ଦୁଗ୍ଧଧାରା ଚ ତଦା କାର୍ଯ୍ୟା ବିଶେଷତଃ । ୪୨ ।

ଅର୍ଥ—କେବଳ ଦୁଗ୍ଧରେ ଅଭିଷେକକଲେ ପ୍ରମେହରୋଗ ଶାନ୍ତିହୁଏ ଏବଂ ମନୋବାଞ୍ଛିତ ଫଳମିଳେ । ୪୨ ।

ଶର୍କରା ମିଶ୍ରିତା ତତ୍ର ଯଦା ବୁଦ୍ଧିଜଡ଼ୋଭବେତ୍ ।
ଶ୍ରେଷ୍ଠବୁଦ୍ଧିର୍ଭବେତ୍ତସ୍ୟୋଽପି କୃପୟା ଶଙ୍କରସ୍ୟ ତୁ । ୪୩ ।

ଅର୍ଥ—ଦୁଗ୍ଧ ସଙ୍ଗରେ ଶର୍କରା ମିଶାଇ ଅଭିଷେକକଲେ ଶିବଙ୍କ କୃପାରେ ଜଡ଼ବୁଦ୍ଧି ଲୋକର ବୁଦ୍ଧି ମାର୍ଜିତ ହୁଏ । ୪୩ ।

ଶତ୍ରୂଣାଂ ତାପନାର୍ଥଂ ବୈ ତୈଳଧାରା ଶିବାପ୍ସୁ ଚ ।
ବାସିତେନୈବ ତୈଲେନ ଭୋଗବୃଦ୍ଧିଃ ପ୍ରଜାୟତେ । ୪୪ ।

ଅର୍ଥ—ଶିବଙ୍କ ଶିରରେ ତୈଳଧାରା ଦେଲେ ଶତ୍ରୁର ସନ୍ତାପ ବୃଦ୍ଧିହୁଏ । ସୁବାସିତ ତୈଳଧାରା ଦେଲେ ଭୋଗ ବୃଦ୍ଧି ହୁଏ । ୪୪ ।

ସ୍ୱଗେହେ କଳହୋ ନିତ୍ୟଂ ଯଦା ଚୈବ ପ୍ରଜାୟତେ ।
ଦୁଗ୍ଧଧାରାକୃତାୟାଂ ବୈ ସର୍ବଦୁଃଖଂ ବିଲୀୟତେ । ୪୫ ।

ଅର୍ଥ—ଯାହାର ନିତ୍ୟ ଗୃହରେ କଳହ ଲାଗିଥିବ ସେ ଯେବେ ଶିବଙ୍କ ଶିରରେ ଦୁଗ୍ଧଧାରା ଦିଏ ତାହାର ସେ ସବୁ ଶାନ୍ତହୋଇ ସର୍ବଦୁଃଖ ନଷ୍ଟ ହୋଇଯାଏ । ୪୫ ।

ସାର୍ଷପେଣୈବ ତୈଲେନ ଶତ୍ରୁନାଶୋ ଭବେଦ୍ଧ୍ରୁବ ।
ମଧୁନା ଯକ୍ଷ୍ମରୋଗୋଽପି ଗଚ୍ଛେଦ୍ବୈ ଶିବପୂଜନାତ୍ । ୪୬ ।

ଅର୍ଥ—ଶୋରିଷତେଲ ଧାରା ଶିବଙ୍କଶିରରେ ଦେଲେ ଶତ୍ରୁ ନାଶହୁଏ । ମଧୁରେ ଅଭିଷେକ କଲେ ରାଜଯକ୍ଷ୍ମା ରୋଗ ନାଶହୁଏ ।

ଧାରା ଚେକ୍ଷୁରସସ୍ୟାପି ଜାତା ସୁଖକରୀ ସ୍ମୃତା ।
ଗଙ୍ଗାଜଳସମୁଦ୍ଭୂତା ଧାରା ମୋକ୍ଷଫଳପ୍ରଦା । ୪୭ ।

ଅର୍ଥ—ଶଙ୍ଖ ଉପରେ ଅଭିଷେକ କଲେ ନାନାପ୍ରକାର ସ୍ୱର୍ଣ୍ଣଲାଭ ହୁଏ ଓ ଗଙ୍ଗା ଜଳରେ ଅଭିଷେକ କଲେ ମୋକ୍ଷଫଳ ଲାଭହୁଏ ।୪୭

ଇତି ପ୍ରଥମତନ୍ତ୍ରଃ ।

——୦——

## ଦ୍ୱିତୀୟତନ୍ତ୍ରଃ ।

### ଶିବପୂଜା ପ୍ରୟୋଜନର ଆବଶ୍ୟକ ପଦାର୍ଥ ।

ଅଶ୍ୱସ୍ଥାନାଦ୍ଗଜସ୍ଥାନାଦ୍ ଗୋଷ୍ଠଦାତ୍ ମୃଦମାନୟେତ୍ ।
ଅଶ୍ୱତ୍ଥଦର୍ଭମୂଲାଚ୍ଚ ଶମୀମୂଲାତ୍ତଥୈବ ଚ । ୧ ।

ଅର୍ଥ—ଅଶ୍ୱଶାଳ, ଗଜଶାଳ ଓ ଗୋରୁଗୁହାଳରୁ ମାଟିଆଣିବ, ସେହିପରି ଅଶ୍ୱତ୍ଥମୂଳ, କୁଶମୂଳ ଓ ଶମୀବୃକ୍ଷମୂଳରୁ ମାଟି ଆଣିବ ।୧

ରାଜଦ୍ୱାରାନ୍ନଦୀକୂଲାଚ୍ଚ ବଲ୍ମୀକାତ୍ ସିନ୍ଧୁସଙ୍ଗମାତ୍ ।
ତଥାଶୁଦ୍ଧସ୍ଥଳସ୍ଥାନାଃ ଆନୟିତ୍ୱା ଚୂର୍ଣ୍ଣୟେତ୍ । ୨ ।

ଅର୍ଥ—ରାଜଦ୍ୱାରର ମୃତ୍ତିକା, ଅମ୍ବଗଛମୂଳରମାଟି, ଦୁବାମାଟି, ଗଙ୍ଗାସାଗରସଙ୍ଗମସ୍ଥାନରମାଟି, ଶୁଖିଲାପୋଖରୀମାଟି, ଏ ସମସ୍ତ ମାଟିତ ଆଣି ଚୂର୍ଣ୍ଣ କରିବ । ୨ ।

ନାରିକେଳଫଳଂ ଚୈକଂ ପକ୍ୱଂ ଚୈବାମ୍ରକାସ୍ତୁକଂ ।
ବିଲ୍ୱଚନ୍ଦନୟୋର୍ବାପି ଅଭାବେ ନମ୍ରକାସ୍ତୁକଂ । ୩ ।

ଅର୍ଥ—ଏକ ନାରିକେଳଫଳ ବା ପକ୍ୱଆମ୍ବକାଠ, ବେଲ ବା ଚନ୍ଦନକାଠ ଅଭାବରେ ନମ୍ରକାଠ । ୩ ।

ସପାଦହସ୍ତପ୍ରମିତଂ ଚତୁର୍ଦ୍ଧଂ ପରିଷ୍କୃତଃ ।
ଏକାଦଶାଙ୍ଗୁଳୋଚ୍ଚଂ ତୁ ଚତୁଷ୍କୋଣଂ ପ୍ରକଳ୍ପୟେତ୍ । ୪ ।

ଅର୍ଥ—ସଓାହାତ ଲମ୍ବା ହାତେ ଓସାର ଏଗାର ଅଙ୍ଗୁଳ ଉଚ୍ଚ ଗୋଟିଏ ଚୌକୋଣିଆ ଥଅର କରିବ । ୪ ।

ସପାଦସେଚକେନାପି ତାମ୍ରପାତ୍ରଂ ବିଶେଷତଃ ।
ଶିବଲିଙ୍ଗାଭିଷେକାର୍ଥେ ବର୍ତ୍ତୁଳଂ ବଧୂପମ୍ବରୁ । ୫ ।

ଅର୍ଥ—ସର୍ଦ୍ଧ୍ୱାସେର ପରିମିତ ଗୋଟିଏ ତାମ୍ରପାତ୍ର ଚତୁରସ୍ରପର ବର୍ତ୍ତୁଳାକାର ହୋଇଥିବ ତାହା ଶିବଲିଙ୍ଗ ସ୍ଥାପନାର୍ଥରେ ଅୟୋଜନ କରିବ । ୫ ।

ମଣ୍ଡଳାକ୍ଷେପଣାର୍ଥଂ ଚ କଦଳୀସ୍ତମ୍ଭକା ଶୁଭାଃ ।
ସ୍ଥୂଳାସ୍ତ ସରଳାସ୍ତୈବ ଅଭ୍ୟୁଚ୍ଚାଃ ସପ୍ତସଂଖ୍ୟକାଃ । ୬ ।

ଅର୍ଥ—ମଣ୍ଡଳ ଛର୍ଦ୍ଦଣାର୍ଥକଦଳୀର ସ୍ତମ୍ଭ ଶୁଭ ସେ ଯେପରି ମୋଟା ଓ ସରଳ ହୋଇଥିବ ଏବଂ ଏଗାରହାତ ଉଚ୍ଚ ନ୍ୟୂନପକ୍ଷରେ ସାତହାତ ଉଚ୍ଚ ହୋଇଥିବ । ୬ ।

ନବାମ୍ରତରୁଜା ଶାଖା ସୁସ୍ପର୍ଶା ସରଳା ଶୁଭାଃ ।
ସପୁଷ୍ପଲଘୁବୃକ୍ଷାସ୍ତ ଘ୍ରାଣତର୍ପଣକାରଣାଃ । ୭ ।

ଅର୍ଥ—ଆମ୍ବଗଛର ନୂତନଡ଼ାଳ ରଖିବ । ସେ ଯେପରି ସରଳ ଅଭ୍ ସୁସ୍ପର୍ଶ ହୋଇଥିବ । ଆଉ ଘ୍ରାଣର ତୃପ୍ତିଜନକ ଫୁଲଥିବ ଛୋଟ ଛୋଟ ବୃକ୍ଷ, ମଣ୍ଡଳର ଚାରିପାଖରେ ଲଗାଇଦେବ । ୭ ।

କଳଶୋ ମୃଦ୍ଭାଣ୍ଡାଦ୍ୟ ସର୍ଘ୍ୟଯୁକ୍ତଦର୍ପଣ ଚ ।
ସୁସୂତ୍ରଂ ରଞ୍ଜକଚୂର୍ଣ୍ଣଂ ପଞ୍ଚପଲ୍ଲବକାନ୍ ଚ ।
ତୋରଣାନ୍ ଘଟଚତୁଷ୍ଟାଣି ସପୁଷ୍ପଫଳକାନ୍ୟପି । ୮ ।

ଅର୍ଥ—ମାଟିର କଳସ ପଜରପୋଷା, ଅରସୂତ୍ର ଦଳଗଣ୍ଡିନା, ପଞ୍ଚପଲ୍ଲବ, ଫଳ ପୁଷ୍ପ ସହିତ ଘଟଚାରି ତୋରଣମାନ ରଖିବ । ୮ ।

ପଞ୍ଚରତ୍ନଂ ପତାକାଞ୍ଚ ହନୁମନ୍ମୂର୍ତ୍ତିସଂଯୁତା ।
ଶୁଭ୍ରବସ୍ତ୍ରା ଶୁଭ୍ରକାସ୍ଥ ତଦର୍ଥେ ଦଣ୍ଡମୁତ୍ତମଂ । ୯ ।

ଅର୍ଥ—ପଞ୍ଚରତ୍ନ, ହନୁମାନ୍ ମୂର୍ତ୍ତିଯୁକ୍ତ, ଶୁଭ୍ରବସ୍ତ୍ର ଶୁଭ୍ରକାର ପତାକା, ତନ୍ନିମିତ୍ତ ଉତ୍ତମଦଣ୍ଡ ଅୟୋଜନ କରିବ । ୯ ।

ସ୍ୱର୍ଣ୍ଣଂ ଚ ରକ୍ତପୀଠଂ ବା ଗୋମୟଂ ପୀଠମୁତ୍ତିକା । ୧୦ ।
ଶ୍ୱେତଲା ହି ପ୍ୟଣ୍ଡଡାନ୍ୟେବ ସର୍ଷପଃ ପୀତବର୍ଣ୍ଣକଃ ।
ଦୁଗ୍ଧଂ ଗଙ୍ଗୋଦକଂ ଚୈବ ଉପବୀତାନ୍ ଚନ୍ଦନଂ । ୧୧ ।

ପୁଷ୍ପାଣି କରବୀରାଣି ବିଲ୍ୱପତ୍ରାଣି ନିତ୍ୟଶଃ ।
ଦୂର୍ବାଙ୍କୁରାଣି ଧତ୍ତୂରପଳପୁଷ୍ପାଣି ନିତ୍ୟଶଃ । ୧୨ ।

ଅର୍ଥ—ନାଲି ବା ହଳଦିଆପୂଜା, ଗୋମୟ, ପୀତବର୍ଣ୍ଣ ମୃତ୍ତିକା, ଗୋରୋଚନା ଅକ୍ଷତ, ପୀତବର୍ଣ୍ଣ ସୋରିଷ, ଦୁଗ୍ଧ, ଗଙ୍ଗୋଦକ, ଉପବୀତ, ଚନ୍ଦନ, କରବୀରପୁଷ୍ପ; ବିଲ୍ୱପତ୍ର, ଦୂବକାଣ୍ଡ, ଦୁଦୁରା-ଫୁଲ, । ୧୦।୧୧।୧୨ ।

ଅଷ୍ଟଗନ୍ଧଂ ସୁଧୂପୌ ଦ୍ୱୌ ଗୋଘୃତଂ ବର୍ତ୍ତିକାସ୍ତଥା ।
କର୍ପୂରଂ ଚୈବ ନୈବେଦ୍ୟଂ ଫଳାନି ବିବିଧାନ୍ୟପି । ୧୩ ।

ଅର୍ଥ—ଅଷ୍ଟଗନ୍ଧ, ଉତ୍ତମଗନ୍ଧ ଦୁଇଗୋଟି, ଘୃଅଦୀପ, ବତି, କର୍ପୂର; ନୈବେଦ୍ୟ ନାନାପ୍ରକାର ଫଳ । ୧୩ ।

ପୂଗୀଫଳଂ ଲବଙ୍ଗାନି ତାମ୍ବୁଲସହିତାନି ବା ।
ଲିଙ୍ଗଂ ଜାତିଫଳଂ ଶ୍ରେଷ୍ଠମୁପହାରାର୍ଥମାହରେତ୍ । 

ଅର୍ଥ—ପୂଗୀଫଳ, ଲବଙ୍ଗ, ତାମ୍ବୁଳ, ଜାଇଫଳ, ଏସବୁ ପଦାର୍ଥ ଉପହାର ନିମନ୍ତେ ଆୟୋଜନ କରିବ । ୧୪ ।

ଯତ୍ତୁ ପଦାର୍ଥଜାତ ମୁଖ୍ୟତ୍ୱାତ୍ କାର୍ଯ୍ୟସିଦ୍ଧୌ ପ୍ରକୀର୍ତ୍ତିତଂ ।
ରୁଦ୍ରାଣାଂ ସଂଖ୍ୟୟା ନିତ୍ୟମେକାଦଶାତ୍ମକଂ ଶତଂ । ୧୫ ।

ଅର୍ଥ—ପ୍ରଥମ ତନ୍ତ୍ରରେ ଯେଉଁସବୁ ପଦାର୍ଥ କୁହାଯାଇଅଛି କାର୍ଯ୍ୟ-ସିଦ୍ଧିନିମନ୍ତେ ସେ ସବୁ ପ୍ରଧାନ । ରୁଦ୍ରର ସଂଖ୍ୟା ଏକୋଇଶଶ ।୧୫।

ଅଥ ବୈକାଦଶାନ୍ୟେବ ଶତାନି ପରିକଳ୍ପୟେତ୍ ।
ଅସ୍ୟାଗ୍ରେ ତୁ ଯଥା କାର୍ଯ୍ୟଂ ପୌରବ ନ୍ୟସନ ତଥା । ୧୬ ।

ଅର୍ଥ—ଅଥବା ଏଗାରଶ ରୁଦ୍ର ନିର୍ମାଣ କରିବ କିମ୍ବା ଏହା ମଧ୍ୟରୁ ପ୍ରଥମରୁ ଯେପରି ନିର୍ମାଣ କରିବ ସବୁ ସେହିପରି କରିବ । ୧୬ ।

ତାବତ୍ ସଂଖ୍ୟାକ୍ଷତାନ୍ୟେବ ଦଶାଂଶଂ ହବନଂ ଚରେତ୍ ।
ହବ୍ୟଂ ସର୍ଷପକଂ ଚୈବ ସ୍ୱଭୂଷ୍ଟିତଫଳୈ ର୍ଭବେତ୍ । ୧୭ ।

ଶୁକ୍ଳୈର୍ଣାନାବର୍ଣୈରେବ ନାନାଦେଶୀୟସମ୍ଭବୈଃ ।
ସପାଦପାଦଂ ସେରଂ ତୁ ଦତ୍ୟମାନଂ ବଧୀୟତେ । ୧୮ ।
ପାଲାଶଂ ବୃନ୍ତଜଂ ବାପି ହବ୍ୟଦାତ୍ତ୍ରଂ ସମାନୟେତ୍ । ୧୯ ।

ଅର୍ଥ—ତେରଶତ ସଂଖ୍ୟାରେ ଅକ୍ଷତରେ ହୋମ କରିବ । ଅଥ୍ବା ତପର ଦଶସ୍ୱର ହୋମ କରିବ । ହୋମ କଲାବେଳେ ଶୁଅଢିଅରେ ଶର୍କରା ଦେଇ ହୋମ କରିବ ଏବଂ ନାନାବିଧ ଓ ନାନାଦେଶ ଜାତ ଶୁଷ୍କ ଫଳକୁ ଉତ୍ତମରୂପେ ଚୂର୍ଣ୍ଣ କରି ସଓ୍ୱାପାସେରେ ପରିମିତ କରିବା ଉଚିତ । ଏହାକୁ ସମାନ ଶର୍କରା ଦେଇ ହୋମ କରିବ । ଅଗ୍ନି ହୋମର ଦାରୁ ଆମ୍ର ବା ପଳାଶ କରିବ । ୧୭ । ୧୮ । ୧୯ ।

ନବଗ୍ରହାଣାଂ ପ୍ରୀତ୍ୟର୍ଥଂ ସମିଧୋ ନବସଂଖ୍ୟକାଃ ।
ପ୍ରାଦେଶମାତ୍ରାଃ ସରଳାଃ ସୂକ୍ଷ୍ମାଗ୍ରା ସ୍ତ୍ରୁତକର୍ଣ୍ଣିତାଃ । ୨୦ ।
ଅର୍କଃ ପଳାଶ ଖଦିରୌ ଅପାମାର୍ଗୋ ଽଥ ପିପ୍ପଳଃ ।
ଔଡୁମ୍ବରଃ ଶମୀ ଦୂର୍ବା କୁଶାଶ୍ଚ ସମିଧଃ କ୍ରମାତ୍ । ୨୧ ।

ଅର୍ଥ—ନବଗ୍ରହଙ୍କ ପ୍ରୀତି ନିମିତ୍ତ ପ୍ରାଦେଶ ପରିମିତ ସରଳ ତୀକ୍ଷ୍ଣ ଅଗ୍ର ନଅଗୋଟି ସମିଧ କରିବ । ସେହି ସମିଧମାନଙ୍କର ନାମ ଯଥା—ଅର୍କ, ପଳାଶ, ଖଦିର, ଅପାମାର୍ଗ, ପିପ୍ପଳ, ଔଡୁମ୍ବର, ଶମୀ, ଦୂବ, କୁଶ, । ୨୧ ।

ନବବସ୍ତ୍ରଂ ଶୁଭ୍ରବର୍ଣ୍ଣଂ ହସ୍ତୈଃ ସାର୍ଦ୍ଧହସ୍ତାବ୍ଧିତଂ ।
ମଣ୍ଡପାଚ୍ଛାଦନାର୍ଥଂ ଚ ଶୁଭ୍ରଂ ମଣ୍ଡପସନ୍ନିଭଂ ।
ପୁଷ୍ପଦାମାଦିକଂ ନବ୍ୟଂ ପୂର୍ବତଃ ପରିସଞ୍ଚୟେତ୍ । ୨୨ ।

ଅର୍ଥ—ଅଢେଇହାତ ପରିମାଣରେ ନୂତନ ଶୁକ୍ଳ ବସ୍ତ୍ର ଓ ମଣ୍ଡପ ଆଚ୍ଛାଦନନିମିତ୍ତ ମଣ୍ଡପପରିମାଣରେ ଶୁକ୍ଳବସ୍ତ୍ର, ଏବଂ ପୁଷ୍ପମାଳା ଏସବୁ ପ୍ରଭୃତି ଆୟୋଜନ କରିଥିବ । ୨୨ ।

### ଅର୍ଘ୍ୟବରଣ ବିଧି ।

ଅର୍ଘ୍ୟବରଣାର୍ଥେ ନା ପୈତ୍ତଲଂ ଚ କମଣ୍ଡଳୁଂ
ଅଷ୍ଟୋତ୍ତରଶତ ମାଳା ରୁଦ୍ରାକ୍ଷୀ ଶ୍ୱେତଂ ଶୁଭଂ । ୧୩
ଗୋମୁଖୀ ରକ୍ତବର୍ଣ୍ଣା ବା ଅଧୋବସ୍ତ୍ରେ ସୁଶୁଭ୍ରକେ ।
ସୌବର୍ଣ୍ଣୀ ରାଜତୀ ବାପି ଦକ୍ଷିଣା ପୁଷ୍କଳା ତଥା । ୧୪ ।
ସୁକୁଳୀନାୟ ଶାନ୍ତାୟ ଦ୍ୱିଜବେ ସାମ୍ପ୍ରଦାୟିକେ ।
ଦତ୍ତ୍ୱା ଚୈତାନ ବସ୍ତୂନ ଶିବମାରାଧୟେତ୍ତତଃ । ୧୫ ।

ଅର୍ଥ—ଅର୍ଘ୍ୟ ବରଣାର୍ଥ ପିତଳର କମଣ୍ଡଳୁ, ଅଷ୍ଟୋତ୍ତରଶତ ରୁଦ୍ରାକ୍ଷମାଳା, ଉତ୍ତମ ଶ୍ୱେତ ଆସନ, ରକ୍ତବର୍ଣ୍ଣ ଗୋମୁଖୀ, ଉତ୍ତମ ଶୁଭ୍ର ଧୋଉତଦର, ସୁବର୍ଣ୍ଣ ବା ରୂପାର ଦକ୍ଷିଣା, ଶାନ୍ତ ସୁକୁଳୀନ ସରଳ ସାମ୍ପ୍ରଦାୟିକ ବ୍ରାହ୍ମଣଙ୍କୁ ଦେଇ ତତ୍ପରେ ଶିବପୂଜା କରିବ । ୧୫ ।

---

### ଅଥ କାଳନିର୍ଣ୍ଣୟଃ ।

ସିଦ୍ଧିଯୋଗେ ଽ ମୃତେଚୈବ ସୁମୂହୂର୍ତ୍ତେ ଽ ଥବା ତଥା ।
ଦେବୋତ୍ଥାନେ ଶୁଭେ ପକ୍ଷେ ଅସ୍ତାଦଦୋଷବର୍ଜିତେ । ୧୬ ।
ଉଦୟେ ଜନ୍ମଲଗ୍ନେଶମୂର୍ଦ୍ଧନ୍ୟୋ ବିଶେଷତଃ ।
ଶୁଭେତ୍ ଷ୍ଟମେ ଦ୍ୱାଦଶେ ଚ କ୍ରିୟାମାଦୌ ସମାରଭେତ୍ ।୧୭

ଅର୍ଥ—ସିଦ୍ଧିଯୋଗରେ ଅମୃତଯୋଗରେ ଉତ୍ତମ ମୁହୂର୍ତ୍ତରେ ଦେବୋତ୍ଥାନକାଳରେ ଶୁଭପକ୍ଷରେ ଅସ୍ତାଦଦୋଷରହିତରେ ଜନ୍ମଲଗ୍ନପତି ଓ ମୂର୍ଦ୍ଧିପତିର ଉଦୟକାଳରେ ଅଷ୍ଟମ ଓ ଦ୍ୱାଦଶ ଶୁଦ୍ଧିରେ କର୍ମ ଆରମ୍ଭ କରିବ । ୧୭ ।

ନାପରକାଳେ ଦ୍ୟାଚୁରେ ଚ ବର୍ଦ୍ଧୁରଃ କାଳବୃଦ୍ଧୈଃ ।
କେବଳଂ ଲଗ୍ନମାଶ୍ରିତ୍ୟ ଶୁଦ୍ଧକାମଭଲେଦ୍ଧୀମାନ୍ । ୧୮ ।
ସର୍ବଂ ପାଠେଶ୍ୱ ସଂସ୍ଥାପ୍ୟ ତତଃ ପୂଜାଂ ସମାଚରେତ୍ ।
ନ ତାବଦାରଭେତ୍ ପୂଜାଂ ନ ଯାବତ୍ ସଙ୍କଳ୍ପୋ ଭବେତ୍ । ୧୯ ।

ଅର୍ଥ—ତାନ୍ତ୍ରିକ ପଣ୍ଡିତମାନେ କହନ୍ତି ଆପତ୍କାଳରେ ଅଭୁର ସମୟରେ ଏ ସବୁ ବିଚାର କରିବ ନାହିଁ । କେବଳ ଲଗ୍ନ ଶୁଦ୍ଧି ଦେଖିବ । ସମସ୍ତ ଦ୍ରବ୍ୟ ପାଇବେ ଉଣି ତପୂରେ ପୂଜା ଆରମ୍ଭ କରିବ ଯେ ପର୍ଯ୍ୟନ୍ତ ଦ୍ରବ୍ୟ ସଂଗ୍ରହ ହୋଇନାହିଁ ସେପର୍ଯ୍ୟନ୍ତ ପୂଜା ଆରମ୍ଭ କରିବ ନାହିଁ । ୨୮ । ୨୯ ।

---

ଅଥ ଦେଶସ୍ଥାନନିର୍ଣ୍ଣୟଃ ।

ଏକାନ୍ତେ ନିର୍ଜନେ ଚୈବ ଜନସମ୍ବାଦବର୍ଜିତେ ।
ଜଳାଶୟେ ସ୍ୱଗେହେ ବା ତଥା ଦେବାଦିମନ୍ଦିରେ । ୩୦ ।

ଅର୍ଥ—ଏକାନ୍ତ ସ୍ଥାନରେ ନିର୍ଜନ ସ୍ଥାନରେ ଜନସମ୍ବାଦରହିତ ସ୍ଥାନରେ ଜଳାଶୟରେ ବା ସ୍ୱଗୃହରେ ଅଥବା ଦେବମନ୍ଦିରରେ ପୂଜା ଆରମ୍ଭ କରିବ । ୩୦ ।

କୃତ୍ୱା ସ୍ନାନକ୍ରିୟାଂ ବୁଦ୍ଧ୍ୱା ତଥା ନିତ୍ୟକ୍ରିୟାଂ ପୁନଃ ।
ବିଧିନା ମଣ୍ଡପଂ କୁର୍ଯ୍ୟାତ୍ପୂର୍ବଞ୍ଚୈବ ପ୍ରଥମେଽହନି । ୩୧ ।

ଅର୍ଥ—ସ୍ନାନକ୍ରିୟା ଓ ନିତ୍ୟକ୍ରିୟା ସାରି ପ୍ରଥମ ଦିବସରେ ବିଧି ପୂର୍ବକ ପୂଜାମଣ୍ଡପ କରିବ । ୩୧ ।

---

ଅଥ ମଣ୍ଡପରଚନାପ୍ରାରମ୍ଭଃ ।

ତଦାଦୌ ନିର୍ଦ୍ଦିଷ୍ଟସ୍ଥାନେ ଶୁଦ୍ଧାୟାଂ ଭୂମୌ ଗୋମୟମିଶ୍ରିତଅମ୍ଳ-ମୂଳବଲ୍ମୀକମୃତ୍ତିକାଭ୍ୟାଂ ସହ ପୀତବର୍ଣ୍ଣମୃତ୍ତିକୟୋପଲିପ୍ୟ ତନ୍ମଧ୍ୟେ ଦ୍ୱାବିଂଶତିହସ୍ତପରିମିତସୀମ୍ନା ଚତୁର୍ଦ୍ୱାରସହିତଂ ଚତୁଷ୍କୋଣମଣ୍ଡପଂ କୁର୍ଯ୍ୟାତ୍ । ତସ୍ୟ ପୂର୍ବସୀମାଂ ପଞ୍ଚହସ୍ତପ୍ରମିତାଂ କୁଶମୂଳମୃତ୍ତିକୟା କୁର୍ଯ୍ୟାତ୍ । ତଥା ପଶ୍ଚିମଦିକ୍ସୀମାଂ ପଞ୍ଚହସ୍ତ ପ୍ରମିତାଂ ସିନ୍ଧୁସଙ୍ଗମମୃତ୍ତିକୟା ।

ଅର୍ଥ—ପ୍ରଥମ ପୂର୍ବକଥିତସ୍ଥାନରେ ଶୁଦ୍ଧଭୂମିରୁ ଅମ୍ଳମୂଳମାଟି ଓ ବଲ୍ମୀକମାଟିରେ ଗୋବର ଓ ପୀତବର୍ଣ୍ଣମାଟି ମିଶାଇ ଲିପି ତା

ମଧ୍ୟରେ ୨୨ହାତ ପରିମାଣରେ ଗୋଟିଏ ଚତୁଷ୍କୋଣ ମଣ୍ଡପ କରିବ ଓ ତାହାର ଦ୍ୱାର ଉତ୍ତରକୁ କରିବ । କୁଶମୂଳ ମୃତ୍ତିକାରେ ତାହାର ପୂର୍ବଭାଗକୁ ପାଞ୍ଚହାତ ପରିମାଣରେ ନିର୍ମାଣ କରିବ ଓ ପଶ୍ଚିମଦିଗରୁ ପାଞ୍ଚହାତ ଯାଏ ସଙ୍ଗମ ମୃତ୍ତିକାରେ କରିବ ।

ଏବଂ ଦକ୍ଷିଣବକ୍ଷୀମା ଷଡ଼୍ହସ୍ତପ୍ରମିତା ଧେନୁସ୍ଥାନମୃତ୍ତିକଯା
ତଦ୍ବତ୍ ଉତ୍ତରବକ୍ଷୀମା ଷଡ୍ହସ୍ତ ପ୍ରମିତା ବଲ୍ମୀକମୃତ୍ତିକଯା
ତସ୍ୟାଂ ଦ୍ୱିହସ୍ତପ୍ରମିତଂ ଦ୍ୱାରଂ କୃତ୍ୱା ଦେହଲ୍ୟାଂ ରାଜଦ୍ୱା-
ରମୃତ୍ତିକାଂ କ୍ଷିପେତ୍ ।

ଅର୍ଥ—ସେହିପରି ଦକ୍ଷିଣଭାଗକୁ ଛହାତ ଗୋରୁଥିବାସ୍ଥାନମୃତ୍ତିକାରେ ଓ ଉତ୍ତରଦିଗକୁ ଛହାତ ହୁଙ୍କାମାଟିରେ ପଥର କରି ତହିଁରେ ଦ୍ୱିହସ୍ତପରିମିତ ଗୋଟିଏ ଦ୍ୱାର କରିବ । ଦେହଳରେ ରାଜଦ୍ୱାର ମୃତ୍ତିକା ପକାଇବ । ୦ ।

ପୁନର୍ଦ୍ୱାରାଗ୍ରେ ବାମଭାଗେ ସପାଦହସ୍ତ ପ୍ରମିତାଂ ସରଳାଂ ସମ୍ମୁଖୀଭୂତାଂ ଗଜସ୍ଥାନମୃତ୍ତିକଯା ବାମଭୁଜାଂ କୁର୍ଯ୍ୟାତ୍ । ତଦ୍ବତ୍ ଦକ୍ଷିଣଭାଗେଽପି ସପାଦହସ୍ତପ୍ରମିତାଂ ଅଶ୍ୱସ୍ଥାନମୃତ୍ତିକଯା ଦକ୍ଷଭୁଜାଂ କୁର୍ଯ୍ୟାତ୍ ।

ଅର୍ଥ—ପୁନର୍ବାର ଦ୍ୱାରର ଆଗରେ ବାମଭାଗରେ ପାଞ୍ଚପା ପରିମାଣରେ ସରଳ ସମ୍ମୁଖୀଭୂତ ବାମଭୁଜ ଗଜସ୍ଥାନମୃତ୍ତିକାଦ୍ୱାରା ନିର୍ମାଣ କରିବ । ସେହିପରି ଦକ୍ଷିଣଭାଗରେ ଅଶ୍ୱସ୍ଥାନମୃତ୍ତିକାଦ୍ୱାରା ପାଞ୍ଚପା ପରିମାଣରେ ଦକ୍ଷିଣଭୁଜ କରିବ । ୦ ।

ତତ୍ପୃଷ୍ଠାନ୍ମଣ୍ଡପମଧ୍ୟେ ବେଦେଷେ ବଲ୍ମୀକମୃତ୍ତିକଯାଂ ସର୍ବତଃ ସପାଦହସ୍ତପ୍ରମିତମଧ୍ୟଂ ଶିଖରକାରଂ ଏକାଦଶାଙ୍ଗୁଳୋଚ୍ଚମଷ୍ଟଦଳପଦ୍ମଂ ଯଦ୍ବା ପୂର୍ଣ୍ଣଚନ୍ଦ୍ରମଣ୍ଡଳବତ୍ କୈଳାସଂ ରଚୟେ ତସ୍ୟୋପରି ତାମ୍ରପାତ୍ରଂ ନିଧାୟ ଅଗ୍ରଭାଗେ ଦ୍ୱାରସମ୍ମୁଖେ ଈଶାନକୋଣାଚ୍ଛିତାର୍ଦ୍ଧଃ ଚତ୍ୱରଂ ବର୍ତ୍ତୁଳଂ କଣଜେତୁ ପ୍ରାଦେଶମାତ୍ରାଦପ୍ୟଧିକଟିଣ ମାନଂ ।

ଅର୍ଥ— ତତ୍ପୃଷ୍ଠାରୁ ମଣ୍ଡପର ମଧ୍ୟରେ ଦୁର୍ବାମାଷ୍ଟିଦ୍ୱାରା ପାଞ୍ଚପା ପରିମାଣରେ ଶିଖସ୍ୱାର ଏପାରି ଅଙ୍ଗୁଳି ଉଚ୍ଚ ଅଷ୍ଟଦଳପଦ୍ମ କରିବ । ଅଥବା ପୂର୍ଣ୍ଣଚନ୍ଦ୍ରମଣ୍ଡଳବତ୍ କୈଳାସ ନିର୍ମାଣ କରିବ । ତାହା ଉପରେ ତାମ୍ରପାତ୍ର ରଖି ଅଗ୍ରଭାଗ ଦ୍ୱାରସମ୍ମୁଖରେ ଈଶାନକୋଣରେ ବର୍ତ୍ତୁଳାକାର ଅର୍ଦ୍ଧ ହାତର ଖୋଳିବ । ସେ ଯେପରି ପ୍ରାଦେଶରୁ ଅଧିକ ହେବ । ୦ ।

ହରସ୍ୟ ଦକ୍ଷିଣଭାଗେ ମଣ୍ଡଳସ୍ୟେଶାନକୋଣସମ୍ମୁଖେ ଅଗ୍ନି-ସ୍ଥାପନହେତୁତ୍ୱାତ୍ ସ୍ୱଚ୍ଛଶ୍ଚିତକ୍ଷୁଣ୍ଣମୂଳମୃତ୍ତିକଯା ସାର୍ଦ୍ଧହସ୍ତବିସ୍ତ ପରି-ମିତସୀମା ଦ୍ୟଙ୍ଗୁଳୋଚ୍ଚାଂ ଚତୁଷ୍କୋଣବେଦିକାଂ କୁର୍ଯ୍ୟାତ୍ । ମଣ୍ଡଳସ୍ୟେଶାନକୋଣେ କଳଶସ୍ଥାପନଂ ।

ଅର୍ଥ—ହରର ଦକ୍ଷିଣଭାଗରେ ମଣ୍ଡଳର ଈଶାନକୋଣସମ୍ମୁ-ଖରେ ଅଗ୍ନିସ୍ଥାପନସକାଶେ ସ୍ୱଚ୍ଛଶ୍ଚିତକ୍ଷୁଣ୍ଣମୂଳମୃତ୍ତିକାଦ୍ୱାରା ଅଢ଼େଇ-ହାତପରିମାଣରେ ଦୁଇଅଙ୍ଗୁଳିଉଚ୍ଚରେ ଗୋଟିଏ ଚାରି କୋଣିଆ ବେଦି କରିବ । ମଣ୍ଡଳର ଈଶାନକୋଣରେ କଳଶ ସ୍ଥାପନ କରିବ ।୦

ମଣ୍ଡଳସ୍ୟ ପୂର୍ବଦିଶାୟାଂ ଶିବଶିଖରଦକ୍ଷଭାଗେ ସମୀପେ ଚୈବ ତୀର୍ଥାବାହନହେତୁତ୍ୱାତ୍ ପ୍ରାଦେଶମାତ୍ରଚତୁଃସୀମାସମ୍ମିତଂ ପ୍ରାଦେଶ-ମାତ୍ରାଗାଧଂ ଚ ଚତୁଃକୋଣଗହ୍ୱରଂ ଖନେତ୍ ।

ଅର୍ଥ—ମଣ୍ଡଳର ପୂର୍ବଦିଗରେ ଶିବଶିଖରର ଦକ୍ଷିଣଭାଗନିକଟରେ ତୀର୍ଥାବାହନସକାଶେ ପ୍ରାଦେଶ ପରିମିତ ସର୍ବ ଦିଗ ପ୍ରାଦେଶ ପରିମିତ ଗର୍ତ୍ତର ଗଭୀର ଓ ଚାରି କୋଣିଆ କରି ଗୋଟିଏ ଗର୍ତ୍ତ ଖୋଳିବ ।

ଶିଖରସ୍ଥଲିଙ୍ଗମୁତ୍ତରାଭିମୁଖଂ ତସ୍ୟ ବାମଭାଗେ ପୂର୍ବାଭିମୁଖମାର୍-ଘ୍ୟାସନଂ ତୟୋର୍ମଧ୍ୟେ ପୁସ୍ତକସ୍ଥାପନାୟ ଚନ୍ଦନାଦିନିର୍ମିତକାଷ୍ଠପଟ୍ଟଂ ।

ଅର୍ଥ—ଶିଖରସ୍ଥିତ ଲିଙ୍ଗକୁ ଉତ୍ତରାଭିମୁଖ କରି ତାହାର ବାମ-ଭାଗେ ପୂର୍ବମୁଖ କରି ଅର୍ଘ୍ୟର ଆସନ ରଖିବ । ସେ ଦୁହିଙ୍କ ମଧ୍ୟରେ ପୁସ୍ତକ ରଖିବା ନିମିତ୍ତ ଚନ୍ଦନାଦି କାଷ୍ଠ ନିର୍ମିତ ଖଣ୍ଡିଏ ପଟା ରଖିବ ।

ମଣ୍ଡଳସ୍ୟବାହ୍ୟବୌମଦ୍ୱାରଦେଶେ ବାମସ୍ତପ ଲତପୁଷ୍ପକଷାଢ୍ୟାଂ ହନୁମନ୍ମୂର୍ତ୍ତିପତାକାଦଣ୍ଡସହିତା । ମଣ୍ଡଳସ୍ୟ ଚତୁଷ୍କୋଣେଷୁ ଚତୁଃସଂଖ୍ୟକାଃ କଦଳୀସ୍ତମ୍ଭାଃ ସ୍ଥାପ୍ୟାଃ । ସପ୍ତଶେଷା ସ୍ୱୟୋ ଦ୍ୱାରଂ ଧନା ଅନ୍ୟାସୁ ସୀମାସୁ ମଧ୍ୟେ ମଧ୍ୟେ । ସ୍ତମ୍ଭୋନାମୁପରି ସଜ୍ଜିତସ୍ତୋରଣାନ୍ନ ଚ ।

ଅର୍ଥ—ମଣ୍ଡଳର ବାହାର ଦ୍ୱାରଦେଶରେ ବାମସ୍ତମ୍ଭର ପଶ୍ଚାତ୍ କକ୍ଷାରେ ହନୁମନ୍ମୂର୍ତ୍ତି ଓ ଦଣ୍ଡସହିତ ପତାକା ପୋତ ଦେବ । ମଣ୍ଡଳର ଚାରି କୋଣରେ ଚାରିଗୋଟି କଦଳୀଗଛ ପୋତ ଦେବ । ଅବଶେଷ ସପ୍ତ ଦ୍ୱାରରେ ଧନଦ୍ୱାର ଛାଡ଼ି ମଧ୍ୟେ ମଧ୍ୟେ ସ୍ତମ୍ଭଉପରେ ତୋରଣ ବାନ୍ଧିବ । ୧୦ ।

ମଣ୍ଡଳସ୍ୟ ବାହ୍ୟଭୂମୌ ଚତୁର୍ଦ୍ଦିକ୍ଷୁ ବିଶେଷେଣ ତୁ ଦ୍ୱାରସ୍ଥଲେ
ସପୁଷ୍ପଲଘୁବୃକ୍ଷାସ୍ତୁ । ୧୦ ।

ଅର୍ଥ—ମଣ୍ଡଳର ବାହ୍ୟଭୂମିର ଚାରିଦିଗ ଦ୍ୱାରମାନଙ୍କରେ ପୁଷ୍ପିତ କ୍ଷୁଦ୍ରବୃକ୍ଷ ସ୍ଥାପନ କରିବ । ୧୦ ।

ଏତତ୍ସର୍ବଂ ପ୍ରଥମଦିନେ ବିଧାୟ ତତଃ ପଶ୍ଚାତ୍କର୍ତ୍ତବ୍ୟ କାର୍ଯ୍ୟାଣି ଲିଙ୍ଗନିର୍ମାଣାଦୀନି ପ୍ରତିଦିନଂ ପୂଜନପ୍ରକାରଶ୍ଚ ଦ୍ୱିତୀୟତନ୍ତ୍ରାନୁସାରେଣ କୁର୍ଯ୍ୟାତ୍ । ଇତି ଦ୍ୱିତୀୟତନ୍ତ୍ରଃ । ୧୦ ।

ଅର୍ଥ—ଏ ସବୁ ବିଧାନ ପ୍ରଥମ ଦିନରେ କରି ତହୁଁ ପରେ କର୍ତ୍ତବ୍ୟ କାର୍ଯ୍ୟ ଲିଙ୍ଗନିର୍ମାଣ ଆଦି ପ୍ରତିଦିନ ପୂଜା ପ୍ରକାର ଦ୍ୱିତୀୟ ତନ୍ତ୍ର ଅନୁସାରେ କରିବ ।

ଇତି ଦ୍ୱିତୀୟ ତନ୍ତ୍ରଃ ।

—•:○:✽:○:•—

## ତୃତୀୟତନ୍ତ୍ରଃ ।

### ମଣ୍ଡଳସଂସ୍କାରଃ ।

ଅଥ ତନ୍ତ୍ରୋକ୍ତସକାମଶିବପୂଜନପ୍ରକାରମାହ । ତତ୍ରାଦୌ ଦେବାନ୍ତ-
ସ୍ଥାନେ ଜନସଞ୍ଚାରବର୍ଜ୍ଜିତେ ପୂର୍ବୋକ୍ତଦ୍ୱିତୀୟତନ୍ତ୍ରାନୁସାରେଣ କୃତ-

ମଣ୍ଡପେ ଗତ୍ୱା କୃତନିତ୍ୟକ୍ରିୟୋ ନବବସ୍ତ୍ରଂ ପରିଧାର୍ଯ୍ୟ ଆଚମ୍ୟ ସ୍ୱର୍ଣ୍ଣନିର୍ମିତାଶ୍ଚୈକାଦଶମୂର୍ତ୍ତିକାଃ ସ୍ୱହସ୍ତେ କୃତ୍ୱା ମୌନମାସ୍ଥାୟ ମନସା ଷଡ଼କ୍ଷରେଣ ମନ୍ତ୍ରେଣୈକାଦଶବାରଂ ଶିବ ମୂ.ର୍ତ୍ତ୍ୱା ସର୍ବତୋ ମଣ୍ଡଳଚସ୍ୟ ଅନ୍ତର୍ବାହ୍ୟଭୂମୌ ଦଣ୍ଡବତ୍ ପ୍ରକ୍ଷିପେତ୍ । ପୁନଶ୍ଚ ଅପବିତ୍ରଃ ପବିତ୍ରୋବା ସର୍ବାବସ୍ଥାଂ ଗତୋଽପି ବା । ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସବାହ୍ୟାଭ୍ୟନ୍ତରଃ ଶୁଚିଃ । ଓଁ ସଦାଶିବଃ ପୂଜାତୁ ମାଂସ୍ଥାନଂ ଶୈବଂ ଇତ୍ୟେତନ୍ମନ୍ତ୍ରଂ ପଠିତ୍ୱା— ଗଙ୍ଗୋଦକମିଶ୍ରିତପଞ୍ଚଗବ୍ୟୈନୈକାଦଶକୁଶାଗ୍ରକ୍ଷେପୈର୍ବା ଦୂର୍ବାଙ୍କୁରୈର୍ବା ମଣ୍ଡଳସଂସ୍କାରଂ କୁର୍ଯ୍ୟାତ୍ ।

ଅର୍ଥ—ପ୍ରଥମ ଜନଶୂନ୍ୟ ଏକାନ୍ତ ସ୍ଥାନରେ ଦ୍ୱିତୀୟ ଚକ୍ର ଅନୁସାରେ କରିଥିବା ମଣ୍ଡପକୁ ଯାଇ ନିତ୍ୟକର୍ମ ଶେଷକରି ନୂଆଲୁଗା ପିନ୍ଧି ଆଚମନ କରି ସ୍ୱର୍ଣ୍ଣନିର୍ମିତ ଏକାଦଶମୂର୍ତ୍ତିକା ହାତରେ ଧରି ମୌନ-ହୋଇ ମନମଧ୍ୟରେ ଷଡ଼କ୍ଷର ମନ୍ତ୍ରରେ ଏକାଦଶ ବାର ଶିବଙ୍କୁ ସ୍ମରଣ କରି ମଣ୍ଡଳର ଅନ୍ତର ବାହାର ଦଣ୍ଡବତ ଓ-ଷରୁ ପ୍ରଦେଶରେ ପକା-ଇବ । ପୁଣି (ଅପବିତ୍ରଃ ପବିତ୍ରୋବା ) ଏହିମନ୍ତ୍ର ଓ " ସଦାଶିବ ପୂଜା-ଭୂମି " ଏହିମନ୍ତ୍ର ପଢ଼ି ଗଙ୍ଗୋଦକ ମିଶ୍ରିତ ପଞ୍ଚଗବ୍ୟରେ ଏକାଦଶ କୁଶର ଅଗ୍ରଭାଗ ଦ୍ୱାରା ଅଥବା ଦୂବକାଣ୍ଡ ଦ୍ୱାରା ମଣ୍ଡଳସଂସ୍କାର କରିବ ।

---

## ଅଥ ଆସନସଂସ୍କାରଃ ।

ଓଁ ପୃଥ୍ୱି ତ୍ୱୟା ଧୃତା ଲୋକା ଦେବି ତ୍ୱଂ ବିଷ୍ଣୁନା ଧୃତା । ତ୍ୱଂ ଚ ଧାରୟମାଂ ଦେବି ପବିତ୍ରମାସନଂ କୁରୁ । ଇତ୍ୟେତନ୍ମନ୍ତ୍ରଂ ପଠିତ୍ୱା ପୂର୍ବୋକ୍ତପଞ୍ଚଗବ୍ୟାଦିନା ଆସନସଂସ୍କାରଂ କୁର୍ଯ୍ୟାତ୍ । ତତଃ ଶିବଲିଙ୍ଗ-ସମୀପବର୍ତ୍ତିନ୍ୟାମେଶାନ୍ୟେ ପୂର୍ବାଭିମୁଖମାସନସ୍ଥାନମୁପବିଶେତ୍ । ତଦାସନ-ମାସ୍ତୀର୍ଯ୍ୟୋପବିଶେତ୍ ।

ଅର୍ଥ—" ପୃଥ୍ୱି ତ୍ୱୟା ଧୃତା ଲୋକା " ଏହି ମନ୍ତ୍ର ପଢ଼ି ପୂର୍ବୋକ୍ତ ପଞ୍ଚଗବ୍ୟାଦିରେ ଆସନ ସଂସ୍କାର କରିବ । ତତ୍ପରେ ଶିବଲିଙ୍ଗର ସମୀପରେ

ଥିବା ବାମହସ୍ତ ଆସନସ୍ଥାନରେ ପୂର୍ବୋକ୍ତ ପଞ୍ଚଗବ୍ୟ ସିଞ୍ଚି ପୂର୍ବାଗ୍ରୁ ମୃଗକର ଚର୍ମରେ ଆସନ ପକାଇବ । ତାହା ଉପରେ ତଳଲିଖିତ ଉପବେଶନ ମନ୍ତ୍ର ପଢ଼ି ବସିବ ।

—o:०:o—

## ଉପବେଶନ ମନ୍ତ୍ର ।

ତଦ୍ୟଥା—

ଯଦଦ୍ଧାମୃତାର୍ଥଂ ମଥିତେ ମହାବ୍ଧୌ ଦେବାସୁରୈର୍ବାସୁକିମନ୍ଦରାଦ୍ୟୈଃ ।
ଭୂମେର୍ମହାବେଗବଘୂର୍ଣ୍ଣିତାୟାସ୍ତଂ କୂର୍ମମାଧାରଗତଂ ନମାମି । ୧ ।
ସମୁଦ୍ରକାଞ୍ଚୀସରିଦୁତ୍ତରୀୟା ବସୁନ୍ଧରା ମେରୁକିରୀଟଭାରା ।
ଦନ୍ତାଗ୍ରତୋଦ୍ୟେନ ସମୁଦ୍ଧୃତାଭୂସ୍ତମାଦିକୋଲଂ ଶରଣଂପ୍ରପଦ୍ୟେ । ୨ ।

ଇତ୍ୟୁପବେଶ୍ୟ ତନ୍ନାଦବାସ୍ତୁକୃତପଟ୍ଟଂ ତୁ ଶିବଶିରସ୍ୱାସନୟୋର୍ମଧ୍ୟଦେଶେ ସମାଧାୟ ତସ୍ୟୋପରି ପୁସ୍ତକଂ ନ୍ୟସେତ୍ ।

ଅର୍ଥ—ଆସନ ଉପରେ ବସି ତନ୍ନାଦ ବାସ୍ତୁକୃତ ପଟ୍ଟାକୁ ଶିବ ଶିର ଓ ଆସନର ମଧ୍ୟ ଦେଶରେ ରଖିବ ।

———

## ଗୁରୁସ୍ମରଣଂ ।

ଅଥାସ୍ୱିତରତ୍ନପ୍ରଦଶାନ୍ତ୍ୟର୍ଥମିଷ୍ଟ୍ୟାଣାମେବାଗ୍ରବୃଷ୍ଟିକରଣାର୍ଥଂ ତ ପୁଷ୍ପାଞ୍ଜଳିଂ ଗୃହୀତ୍ୱା ସ୍ୱଗୁରୋଃ ସ୍ମରଣଂ କୁର୍ଯ୍ୟାତ୍ । ତଦ୍ୟଥା—

ନମାମି ସଦ୍ଗୁରୁଂ ଶାନ୍ତଂ ପ୍ରତ୍ୟକ୍ଷଂ ଶିବରୂପିଣଂ । ଶିରସା ଯୋଗପୀଠସ୍ଥଂ ସର୍ବକାମାର୍ଥସିଦ୍ଧୟେ । ୧ । ଶ୍ରୀଗୁରୁଂ ପରମାନନ୍ଦଂ ନମାମ୍ୟାନନ୍ଦବିଗ୍ରହଂ । ଯସ୍ୟ ସାନ୍ନିଧ୍ୟମାତ୍ରେଣ ଚିଦାନନ୍ଦାୟତେ ପରଂ । ୨ । ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରଂ । ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ । ୩ । ନମୋଽସ୍ତୁ ଗୁରବେ ତସ୍ମୈ ଇଷ୍ଟଦେବସ୍ୱରୂପିଣେ । ଯସ୍ୟ ବାଗମୃତଂ ହନ୍ତି ବିଷଂ ସଂସାରସଂଜ୍ଞକଂ । ୪ । ପ୍ରାତଃପ୍ରବୃଦ୍ଧସାୟୁଜ୍ୟଂ ସାୟୁଜ୍ୟପ୍ରାପ୍ତଭକ୍ତଃ । ଯତ୍ତ୍ୱ-

ଶ୍ରେମି ଜଗନ୍ନାଥ ତଦସ୍ତୁ ତବ ପୂଜନଂ । ୫ । ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନଶଲାକୟା । ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ । ୬ ।

ଇତି ଗୁରୁଂ ମନସା ଧ୍ୟାତ୍ୱା ପ୍ରଣମ୍ୟ ଚ ପୁସ୍ତକ ପ୍ରତି ପୁଷ୍ପାଞ୍ଜଳିଂ ଦଦ୍ୟାତ୍ ।

ଅର୍ଥ—ଅପଣାର ଚିତ୍ତ ଓ ପ୍ରବୃତ୍ତିର ଶାନ୍ତି ନିମିତ୍ତ ଏବଂ ଇନ୍ଦ୍ରିୟ ମାନଙ୍କର ଏକାଗ୍ରବୃତ୍ତିକରଣାର୍ଥ ହସ୍ତରେ ପୁଷ୍ପାଞ୍ଜଳି ଧରି ମନମଧ୍ୟରେ ଶ୍ରୀଗୁରୁଙ୍କୁ ସ୍ମରଣ କରି ପୁସ୍ତକ ଉପରେ ଦେଇ ଉପର ଲିଖିତ ଶ୍ଳୋକ ପାଠକରି ନମସ୍କାର କରିବ ।

## ଦିକ୍‌ଶୋଧନଂ ।

ଅଥ ଦିକ୍‌ଶୋଧନଂ କୁର୍ଯ୍ୟାତ୍ । ତଦ୍ଯଥା—କ୍ରମତଃ ପୂର୍ବାଦଦଶ ଦିକ୍ଷୁ ପୀତସର୍ଷପାନ୍ ବିକୀର୍ଯ୍ୟ ଇମଂ ମନ୍ତ୍ରଂ ପଠେତ୍ । ତଦ୍ଯଥା—

ଓଁ ଅପସର୍ପନ୍ତୁ ତେ ଭୂତା ଯେ ଭୂତା ଭୁବି ସଂସ୍ଥିତାଃ । ଯେ ଭୂତା ବିଘ୍ନକର୍ତ୍ତାରସ୍ତେ ନଶ୍ୟନ୍ତୁ ଶିବାଜ୍ଞୟା ।

ପଶ୍ଚାଦ୍ଦଶଦିକ୍ଷ୍ୱପି ଦଦ୍ୟାତ୍ । ତନ୍ତ୍ରେଣ ମନ୍ତ୍ରଂ । ( ଓଁ ଅଂ ହୁଂ ଫଟ୍ ସ୍ୱାହା ) ।

ଅର୍ଥ—ଅପସର୍ପନ୍ତୁ" ଏହି ମନ୍ତ୍ରପଢ଼ି ପୀତବର୍ଣ୍ଣ ସୋରିଷ ପୂର୍ବଦିଗରୁ ଅରମ୍ଭ କ୍ରମେ ବୁଣିଦେବ । ତତ୍ପରେ ଓଁ ଅଂ ହୁଂ ଫଟ୍ ସ୍ୱାହା ଏହି ମନ୍ତ୍ର ପଢ଼ି ଦଶଗୋଟି ତାଳମାରି ଦିକ୍ ଶୋଧନ କରିବ ।

---

## ଅଥ ତୀର୍ଥାବାହନଂ ।

ତତ ଉତ୍ତିଷ୍ଠନ୍ କୃତାଞ୍ଜଳିଃ ସନ୍ ଗଙ୍ଗାଦିଜଳଂ ଯଥାଲବ୍ଧଂ ପୂରୟିତ୍ୱାଘୋ-ଦ୍ରୋଣକୁମ୍ଭାଦିକୃତକୁମ୍ଭେନାଙ୍କୁଶମୁଦ୍ରୟାବାହୟେତ୍ । ତତ୍ରାୟଂ ମନ୍ତ୍ରଃ ।

ପୁଷ୍କରାଦ୍ୟାନି ତୀର୍ଥାନି ଗଙ୍ଗାଦ୍ୟାଃ ସରିତସ୍ତଥା ।
ଆଗଚ୍ଛନ୍ତୁ ମହାଭାଗାସ୍ତ୍ରୈସ୍ମିନ୍‌ଶ୍ଚ ଶିବାର୍ଚ୍ଚନେ ।
ତତ କର୍ପୂରସ୍ମାନକାଳାନ୍ ପ୍ରତିପ୍ରଣବ କ୍ରମତଃ ପଠେତ୍ ।

ଅର୍ଥ—ତତ୍ପରେ ଶିବଶିଖରର ଦ୍ୱାଦଶାଙ୍ଗୁଳରେ ଯେଉଁ ଗର୍ତ୍ତ କରାଯାଇଅଛି ତହିଁରେ ଯଥାଲବ୍ଧ ଗଙ୍ଗାଜଳ ପୂର୍ଣ୍ଣ କରି ଗୋଟିଏ କୁଶକଣ୍ଟକର ଦ୍ୱାରା ସେଚନ କରି ଜଳକ୍ଷିତ ମନ୍ତ୍ର ପଢ଼ି ତୀର୍ଥାବାହନ କରିବ ଓ ତହିଁରେ କର୍ପୂର ଅକ୍ଷତ ପକାଇବ ।୦।

ଅଥ ଦିଗ୍ବନ୍ଧନଂ ।

୧ ଓଁ ଶର୍ବାୟ କ୍ଷିତିମୂର୍ତ୍ତୟେ ନମଃ । ଇତି ପ୍ରାଚ୍ୟାଂ ।
୨ ଓଁ ଭବାୟ ଜଳମୂର୍ତ୍ତୟେ ନମଃ । ଇତି ଐଶାନ୍ୟାଂ ।
୩ ଓଁ ରୁଦ୍ରାୟ ଅଗ୍ନିମୂର୍ତ୍ତୟେ ନମଃ । ଇତି ଉଦୀଚ୍ୟାଂ ।
୪ ଓଁ ଉଗ୍ରାୟ ବାୟୁମୂର୍ତ୍ତୟେ ନମଃ । ଇତି ବାୟବ୍ୟାଂ ।
୫ ଓଁ ଭୀମାୟ ଆକାଶମୂର୍ତ୍ତୟେ ନମଃ । ଇତି ପ୍ରତୀଚ୍ୟାଂ ।
୬ ଓଁ ପଶୁପତୟେ ଯଜମାନମୂର୍ତ୍ତୟେ ନମଃ । ଇତି ନୈର୍ଋତ୍ୟାଂ ।
୭ ଓଁ ମହାଦେବାୟ ସୋମମୂର୍ତ୍ତୟେ ନମଃ । ଇତି ଦକ୍ଷିଣସ୍ୟାଂ ।
୮ ଓଁ ଈଶାନାୟ ସୂର୍ଯ୍ୟମୂର୍ତ୍ତୟେ ନମଃ । ଇତି ଆଗ୍ନେୟ୍ୟାଂ ।
୯ ଓଁ ଶଙ୍କରାୟ ଚନ୍ଦ୍ରମୂର୍ତ୍ତୟେ ନମଃ । ଇତି ଆକାଶେ ।
୧୦ ଓଁ ଭୂତେଶାୟ ଶେଷମୂର୍ତ୍ତୟେ ନମଃ । ଇତି ପାତାଳେ ।

ଇତି ଦଶଦିଗ୍ବନ୍ଧନଂ କୁର୍ଯ୍ୟାତ୍ ।

ଅର୍ଥ—ଏହି ଉପରୋକ୍ତ ଦ ଟା ମନ୍ତ୍ର ପଢ଼ି ପ୍ରତ୍ୟେକ ଦିଗ୍ବନ୍ଧନ କରିବ ।

---

ଘ ଟ ପୂ ଜା ।

ତତସ୍ତୁ ମଙ୍ଗଳାର୍ଥଂ ସନ୍ଥାତବ୍ୟ ଯଥୋଚିତଂ ସାମାନ୍ୟତସ୍ତୁ କେବଳଂ ସଂକ୍ଷେପପୂର୍ବକଂ କୁର୍ଯ୍ୟାତ୍ । ତଦ୍ୟଥା— ପୂଜାପ୍ରକାରମାହ·ତତ ଈଶାନକୋଣେ ଅବ୍ରଣଂ କଳଶଂ ଅକ୍ଷତଭୂଷିତଂ ସ୍ଥାପ୍ୟ ଭୂମିସ୍ପର୍ଶନ ମନ୍ତ୍ରଃ—ଓଁ ଭୂରସି ଭୂମିରସି ବିଶ୍ୱଧାୟା ବିଶ୍ୱସ୍ୟ ଭୁବନସ୍ୟ ଧର୍ତ୍ତ୍ରୀଂ । ପୃଥିବୀଂ ଯଚ୍ଛ ପୃଥିବୀଂ ଦୃଂହ ପୃଥିବୀଂ ମାହିଂସୀଃ । ଇତି ଭୂମିସ୍ପର୍ଶନଂ ।

ଧାନ୍ୟସ୍ଥାପନମନ୍ତ୍ରଃ । ଓଁ ଧାନ୍ୟମସି ଧିନୁହି ଦେବାନ୍ ପ୍ରାଣାୟ ତ୍ୱୋଦାନା-
ୟ ତ୍ୱା ବ୍ୟାନାୟ ତ୍ୱା ଦୀର୍ଘାମନୁପ୍ରସିତିମାୟୁଷେ ଧାନ୍ ଦେବୋ ବଃ ସବିତା
ହିରଣ୍ୟପାଣିଃ ପ୍ରତିଗୃଭ୍ଣାତ୍ୱଚ୍ଛିଦ୍ରେଣ ପାଣିନା ଚକ୍ଷୁଷେ ତ୍ୱା ମହୀନାଂ
ପୟୋଽସି । ତଦୁପରି କଳଶଂ ସ୍ଥାପୟେତ୍ ମନ୍ତ୍ରେଣ ଓଁ ଆଜିଘ୍ର-
କଳଶଂ ମହ୍ୟା ତ୍ୱା ବିଶନ୍ତ୍ୱିନ୍ଦବଃ । ପୁନରୂର୍ଜ୍ଜା ନିବର୍ତ୍ତସ୍ୱ ସା ନଃ ସହସ୍ରଂ
ଧୁକ୍ଷ୍ୱୋରୁଧାରା ପୟସ୍ୱତୀ ପୁନର୍ମା ବିଶତା ଦ୍ରୟିଃ । ଜଳପୂରଣମନ୍ତ୍ରଃ ।
ଓଁ ବରୁଣସ୍ୟୋତ୍ତମ୍ଭନମସି ବରୁଣସ୍ୟ ସ୍କମ୍ଭ ସର୍ଜ୍ଜନୀସ୍ଥଃ । ବରୁଣସ୍ୟ
ଋତସଦନ୍ୟସି ବରୁଣସ୍ୟ ଋତସଦନମସି ଋତସଦନମାସୀଦ । ତତ୍ରେ
ବସ୍ତ୍ରଂ ବେଷ୍ଟୟେତ୍ । ମନ୍ତ୍ରଃ । ଓଁ ବସୋଃ ପବିତ୍ରମସି ଶତଧାରଂ ବସୋଃ
ପବିତ୍ରମସି ସହସ୍ରଧାରଂ । ଦେବସ୍ତ୍ୱା ସବିତା ପୁନାତୁ ବସୋଃ ପବିତ୍ରେଣ
ଶତଧାରେଣ ସୁପ୍ୱା କାମଧୁକ୍ଷଃ । ଫଳମନ୍ତ୍ରଃ । ଓଁ ଯାଃ ଫଳିନୀ ର୍ଯ୍ୟା ଅଫଳା
ଅପୁଷ୍ପା ଯାଶ୍ଚ ପୁଷ୍ପିଣୀଃ । ବୃହସ୍ପତିପ୍ରସୂତାସ୍ତା ନୋ ମୁଞ୍ଚନ୍ତ୍ୱଂହସଃ । ପଞ୍ଚରତ୍ନ
ପ୍ରକ୍ଷେପ ମନ୍ତ୍ରଃ । ଓଁ ପରିବାଜପତିଃ କବିରଗ୍ନି ର୍ହବ୍ୟାନ୍ୟକ୍ରମୀତ୍ ।
ଦଧଦ୍ରତ୍ନାନି ଦାଶୁଷେ । ଦକ୍ଷିଣାଦାନମନ୍ତ୍ରଃ । ଓଁ ହିରଣ୍ୟଗର୍ଭଃ ସମ-
ବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ । ସଦାଧାର ପୃଥିବୀଂ
ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ । ଗନ୍ଧମନ୍ତ୍ରଃ । ଓଁ
ଗନ୍ଧଦ୍ୱାରାଂ ଦୁରାଧର୍ଷାଂ ନିତ୍ୟପୁଷ୍ଟାଂ କରୀଷିଣୀଂ । ଈଶ୍ୱରୀଂ ସର୍ବଭୂତାନାଂ
ତ୍ୱାମିହୋପହ୍ୱୟେ ଶ୍ରିୟଂ । ଔଷଧି ପ୍ରକ୍ଷେପଃ । ଓଁ ଯା ଓଷଧୀଃ ପୂର୍ବା
ଜାତା ଦେବେଭ୍ୟ ସ୍ତ୍ରିଯୁଗଂ ପୁରା । ମନୈ ନୁ ବଭ୍ରୁଣାମହଂ ଶତଂ
ଧାମାନି ସପ୍ତ ଚ । ସପ୍ତମୃତ୍ତିକାପ୍ରକ୍ଷେପମନ୍ତ୍ରଃ । ଓଁ ସ୍ୟୋନାପୃଥିବୀ
ନୋଭବାନୃକ୍ଷରା ନିବେଶନୀ । ଯଚ୍ଛାନଃ ଶର୍ମସପ୍ରଥାଃ । ଦୂର୍ବା ମନ୍ତ୍ରଃ ।
ଓଁ କାଣ୍ଡାତ୍କାଣ୍ଡାତ୍ ପ୍ରରୋହନ୍ତୀ ପରୁଷଃ ପରୁଷସ୍ପରି । ଏବାନୋ ଦୂର୍ବେ-
ପ୍ରତନୁ ସହସ୍ରେଣ ଶତେନ ଚ । ପଞ୍ଚପଲ୍ଲବ ଦାନମନ୍ତ୍ରଃ । ଓଁ ଅଶ୍ୱତ୍ଥେ-
ବୋ ନିଷଦନଂ ପର୍ଣ୍ଣେ ବୋ ବସତିଷ୍କୃତା । ଗୋଭାଜ ଇତ୍କିଲାସଥ
ଯତ୍ସନବଥପୂରୁଷଂ । ପବିତ୍ର ଦାନମନ୍ତ୍ରଃ । ଓଁ ପବିତ୍ରେସ୍ଥୋ ବୈଷ୍ଣବ୍ୟୌ

ସବିତୁର୍ବଃ ପ୍ରସବ ଉତ୍ପୁନାମି । ଅଚ୍ଛିଦ୍ରେଣ ପବିତ୍ରେଣ ସୂର୍ଯ୍ୟସ୍ୟ ରଶ୍ମିଭିଃ ।
ପୂର୍ଣ୍ଣପାତ୍ରଦାନମନ୍ତ୍ରଃ । ଓଁ ପୂର୍ଣ୍ଣାଦର୍ବି ପରାପତ ସୁପୂର୍ଣ୍ଣା ପୁନରାପତ ।
ବସ୍ନେବ ବିକ୍ରୀଣାବହା ଇଷମୂର୍ଜ୍ଜଂ ଶତକ୍ରତୋ । ଶଙ୍ଖଦାନମନ୍ତ୍ରଃ । ଓଁ ଶ୍ରୀ
ଶ୍ଚତେ ଲକ୍ଷ୍ମୀଶ୍ଚ ପତ୍ନ୍ୟା ବହୋରାତ୍ରେ ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ-
ବ୍ୟାତ୍ତଂ । ଇଷ୍ଣନ୍ନିଷାଣ ମୂମ୍ମ ଇଷାଣ ସର୍ବଲୋକଂ ମଇଷାଣ । ପ୍ରତିଷ୍ଠା-
ମନ୍ତ୍ରଃ । ଓଁ ମନୋଜୁତିର୍ଜୁଷତାମାଜ୍ୟସ୍ୟ ବୃହସ୍ପତିର୍ଯଜ୍ଞମିମଂ ତନୋତୁ ।
ଅରିଷ୍ଟଂ ଯଜ୍ଞଂ ସମିମଂ ଦଧାତୁ ବିଶ୍ୱେଦେବା ସ ଇହ ମାଂ ଦୟନ୍ତା ମୋଂ
ପ୍ରତିଷ୍ଠ । ଓଁ ଭୂର୍ଭୁବଃସ୍ୱଃ ଗଣେଶବରୁଣ ଇହାଗଚ୍ଛ ଇହତିଷ୍ଠ ।
ଓଁ ଗଣାନାଂତ୍ୱା ଗଣପତିଂହବାମହେ ପ୍ରିୟାଣାଂତ୍ୱା ପ୍ରିୟପତିଂ ହବାମହେ
ନିଧୀନାଂତ୍ୱା ନିଧିପତିଂ ହବାମହେ ବସୋମମ ଆହମଜାନି ଗର୍ଭଧମାତ୍ୱମ-
ଜାସି ଗର୍ଭଧଂ । ଇତି ମନ୍ତ୍ରେଣ ଗଣେଶ ମାବାହୟେତ୍ । ଓଁ ତତ୍ତ୍ୱାୟାମି
ବ୍ରହ୍ମଣା ବନ୍ଦମାନସ୍ତଦା ଶାସ୍ତେ ଯଜମାନୋହବିର୍ଭିଃ । ଅହେଡ଼ମାନୋ-
ବରୁଣେହବୋଧ୍ୟୁରୁ ଶଂସମାନ ଆୟୁଃପ୍ରମୋଷୀଃ । ଇତିମନ୍ତ୍ରେଣ ବରୁଣଂ
ଆବାହୟେତ୍ । ପଞ୍ଚୋପଚାରେଣ ଗଣେଶଂ ବରୁଣଂ ଚ ପୂଜୟେତ୍ ।
ତୀର୍ଥାବାହନ ମନ୍ତ୍ରଃ । ସର୍ବେ ସମୁଦ୍ରାଃ ସରିତସ୍ତୀର୍ଥାନି ଜଳଦାନଦାଃ ।
ଆୟାନ୍ତୁ ଯଜମାନସ୍ୟ ଦୁରିତକ୍ଷୟକାରକାଃ । ତତଃ କଳଶାଭିମନ୍ତ୍ରଣଂ ।
କଳଶସ୍ୟ ମୁଖେ ବିଷ୍ଣୁଃ କଣ୍ଠେ ରୁଦ୍ରଃ ସମାଶ୍ରିତଃ । ମୂଳେ ତସ୍ୟ ସ୍ଥିତୋ-
ବ୍ରହ୍ମା ମଧ୍ୟେ ମାତୃଗଣାଃ ସ୍ମୃତାଃ । କୁକ୍ଷୌ ତୁ ସାଗରାଃ ସପ୍ତ ସପ୍ତଦ୍ୱୀପା
ବସୁନ୍ଧରା । ଋଗ୍ୱେଦୋଽଥ ଯଜୁର୍ବେଦଃ ସାମବେଦୋହ୍ୟଥର୍ବଣଃ । ଅ-
ଙ୍ଗୈଶ୍ଚ ସହିତାଃ ସର୍ବେ କଳଶଂ ତୁ ସମାଶ୍ରିତାଃ । ତତଃ କଳଶ ପ୍ରାର୍ଥନା ।
ଦେବଦାନବସଂବାଦେ ମଥ୍ୟମାନେ ମହୋଦଧୌ । ଉତ୍ପନ୍ନୋଽସି
ତଦା କୁମ୍ଭ ବିଧୃତୋ ବିଷ୍ଣୁନା ସ୍ୱୟଂ । ତ୍ୱତ୍ତଃସର୍ବାଣି ତୀର୍ଥାନି ଦେବାଃ
ସର୍ବେତ୍ୱୟିସ୍ଥିତାଃ । ତ୍ୱୟି ତିଷ୍ଠନ୍ତି ସର୍ବେଽପି ଯତଃ କାମଫଳପ୍ରଦାଃ ।
ତ୍ୱତ୍ ପ୍ରସାଦାଦିମଂ ଯଜ୍ଞଂ କର୍ତ୍ତୁମୀହେ ଜଳୋଦ୍ଭବ । ସାନ୍ନିଧ୍ୟଂ କୁରୁ ମେ
ଦେବ ପ୍ରସନ୍ନୋ ଭବ ସର୍ବଦା । ଇତି ପ୍ରାର୍ଥନା । ପୂଜନସ୍ତସ୍ୟ ଯଥା—

ସମ୍ଭୂତସଂକଳ୍ପଂ କୁର୍ଯ୍ୟାତ୍ । ଅର୍ଥାତ୍ ଯତ୍ର ପୂର୍ବଦିବସଃ ସ୍ୟାତ୍ତଦାମୁଖ୍ୟ-
ଯଜମାନମାତ୍ୟୁତ୍ୟୈର୍ବୋ ବରଣବର୍ତ୍ମନା କାରୟେତ୍ । ପଶ୍ଚାତ୍ ଦ୍ୱିତୀୟମପି
ସଂକଳ୍ପଂ ତଦ୍ଦିବସଜନିଶ୍ଚିତାର୍ଦ୍ଧ୍ୟପ୍ରମାଣାତ୍ତାଶ୍ଚର୍ଯ୍ୟଃ ସ୍ୱୟଂ କୁର୍ଯ୍ୟାତ୍ ।
ଯଦ୍ୱା ସ୍ୱସ୍ୟାର୍ଥମେବ ପୂଜନଂ ସ୍ୟାତ୍ତଦା ପ୍ରଥମଂ ଜନ୍ମପିତ ଦିବସାନୁଚ୍ଚାର୍ଯ୍ୟ
ପୂଜନସ୍ୟ ହେତୁଂ ଷ୍ୱେଚ୍ଛାର୍ଯ୍ୟ ସ୍ୱନାମ୍ନୈବ ସଂକଳ୍ପଂ କୁର୍ଯ୍ୟାତ୍ ।
ପୂଜାକାଳେ ଦ୍ୱିତୀୟମପି ସଂକଳ୍ପଂ ତଦ୍ଦିବସଜନିଶ୍ଚିତାର୍ଯ୍ୟପ୍ରମାଣାତ
ସ୍ୱନାମ୍ନୈବ କୁର୍ଯ୍ୟାତ୍ । ୧୦ ।

ଅର୍ଥ—ମଙ୍ଗଳ ନିମିତ୍ତ ଘଟସ୍ଥାପନ କରି କେବଳ ଗଣେଶଙ୍କୁ ଉପସେକ୍ତ ମନ୍ତ୍ରରେ ପୂଜା ଓ ଆଚମନ କରି ସଂକଳ୍ପ କରିବ । ଅର୍ଥାତ୍ ପୂର୍ବଦିନରୁ ଯଜମାନ ସଂକଳ୍ପ କରି ଆଚାର୍ଯ୍ୟଙ୍କୁ ବରଣ କରିବ ତହିଁରେ ଆଚାର୍ଯ୍ୟ ପରଦିନ ଯଥାବିଧି ସଂକଳ୍ପ କରିବେ । ଯଦି ଆପଣା ନିମିତ୍ତ ଆପେ କରନ୍ତି ତେବେ ପୂର୍ବଦିନର ସଂକଳ୍ପ ଆପଣା ନାମରେ ଉଚ୍ଚାରଣ କରିବ ପରଦିନ ମଧ୍ୟ ସେହିପରି କରିବ । ୧୦ ।

ଋଷିଛନ୍ଦ ।

ଅଥ ବିନିଯୋଗଃ ।

ଓଁ ଅସ୍ୟ ଶ୍ରୀ ପାର୍ଥିବେଶ୍ୱର ଚିନ୍ତାମଣିଧ୍ୟାନମନ୍ତ୍ରସ୍ୟ । ନିଗ୍ରହାନୁଗ୍ରହ କର୍ତ୍ତା ବ୍ରହ୍ମା ଋଷିଃ । କାମଦୁଘା ଗାୟତ୍ତ୍ରୀଛନ୍ଦଃ । ଶୀଘ୍ରବରପ୍ରଦସ୍ୱରୂପୀ ପାର୍ଥିବେଶ୍ୱରୋ ଦେବତା । ହ୍ରୀଁ ବୀଜଂ । ଶ୍ରୀଂ ଶକ୍ତିଃ । ନମଃ କୀଳକଂ । ମମ ସର୍ବାଭୀଷ୍ଟକାମନାସିଦ୍ଧ୍ୟର୍ଥେ ବା ଅମୁକାଭୀଷ୍ଟସିଦ୍ଧ୍ୟର୍ଥେ ପୂଜନେ ବିନିଯୋଗଃ । ଯଦ୍ୱା ଅମୁକ ଯଜମାନସ୍ୟାମୁକକାମନାସିଦ୍ଧ୍ୟର୍ଥେ ପୂଜନେ ବିନିଯୋଗଃ । ୧୦ ।

ଅଥ ନ୍ୟାସବିଧିଃ ।

କରନ୍ୟାସୋ ଯଥା—ଓଁ ହ୍ରୌଁ ହ୍ରୀଁ ହୂଁ ସଃ ସର୍ବଜ୍ଞାୟ ଶିବାୟ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ହ୍ରୌଁ ହ୍ରୀଁ ହୂଁ ସଃ ସର୍ବତୃପ୍ତଶକ୍ତି ଶିବାୟ ତର୍ଜ୍ଜନୀଭ୍ୟାଂ ସ୍ୱାହା । ଓଁ ହ୍ରୌଁ ହ୍ରୀଁ ହୂଁ ସଃ ନିତ୍ୟାଲୁପ୍ତଶକ୍ତି ଶିବାୟ

ମଧ୍ୟମାଭ୍ୟାଂ ବଷଟ୍ । ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ଅବ୍ୟକ୍ତାନଶକ୍ତି ଶିବାୟ ଅନାମିକାଭ୍ୟାଂ ନମଃ । ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ନିତ୍ୟାନନ୍ଦଶକ୍ତି ଶିବାୟ କନିଷ୍ଠାଭ୍ୟାଂ ବୌଷଟ୍ । ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ଅନନ୍ତ ଶକ୍ତି ଶିବାୟ କରତଳକରପୃଷ୍ଠାଭ୍ୟାଂ ଫଟ୍ । ୦ ।

ଅଙ୍ଗନ୍ୟାସୋ ଯଥା—ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ସର୍ବଜ୍ଞାୟ ଶିବାୟ ହୃଦୟାୟ ନମଃ । ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ସର୍ବତୃପ୍ତଶକ୍ତି ଶିବାୟ ଶିରସେ ସ୍ୱାହା । ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ନିତ୍ୟମଲୁପ୍ତ ଶକ୍ତି ଶିବାୟ ଶିଖାୟୈ ବଷଟ୍ । ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ଅବ୍ୟକ୍ତାନଶକ୍ତି ଶିବାୟ କବଚାୟ ହୁଁ । ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ନିତ୍ୟାନନ୍ଦଶକ୍ତିଶିବାୟ ନେତ୍ରାଭ୍ୟାଂ ବୌଷଟ୍ । ଓଁ ହ୍ରୋଁ ଘ୍ରାଁ ଜୂଁ ସଃ ଅନନ୍ତଶକ୍ତିଶିବାୟ କରତଳକରପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍ । ୦ ।

---

ଅଥ ଧ୍ୟାନଂ ।

ଧ୍ୟାୟେ ନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ ।
ରତ୍ନାକଳ୍ପୋଜ୍ଜ୍ୱଳାଙ୍ଗଂ ପରଶୁମୃଗବରାଭୀତିହସ୍ତଂ ପ୍ରସନ୍ନଂ ।
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈର୍ବ୍ୟାଳଯଜ୍ଞୋପବୀତଂ
ବିଶ୍ୱାଦ୍ୟଂ ବିଶ୍ୱବନ୍ଦ୍ୟଂ ନିଖିଳଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରଂ ।୧।
କର୍ପୂରଗୌରଂ କରୁଣାବତାରଂ ସଂସାରସାରଂ ଭୁଜଗେନ୍ଦ୍ରହାରଂ ।
ସଦା ବସନ୍ତଂ ହୃଦୟାରବିନ୍ଦେ ଭବଂ ଭବାନୀସହିତଂ ନମାମି ।୨।
କୈଳାସପୀଠାସନମଧ୍ୟସଂସ୍ଥଂ ନନ୍ଦ୍ୟାଦିବୃନ୍ଦାରକସେବ୍ୟମାନଂ ।
ଭକ୍ତାର୍ତ୍ତିଦାବାନଳମପ୍ରମେୟଂ ଧ୍ୟାୟେଦୁମାଲିଙ୍ଗିତବିଶ୍ୱରୂପଂ । ୩ ।
ବନ୍ଦେ ମହେଶଂ ସୁରସିଦ୍ଧ ସେବିତଂ କଲ୍ପଦ୍ରୁମୈଃପୂଜିତପାଦପଦ୍ମଂ ।
ବିଦ୍ୟାପ୍ରଦଂ ଭକ୍ତଜନୈକବନ୍ଦ୍ୟଂ ଧ୍ୟାୟେ ତମଙ୍କାମଦୁଘଂ ପ୍ରସନ୍ନଂ ।୪।
ଯୋ ଯୋଗମାୟାଂ ଧରତେ ବପୁଂଷି ଜ୍ଞାନଂ ବିଧତ୍ତେଽଖିଳବସ୍ତୁଜାତ ।
ତଂ ବିଶ୍ୱନାଥଂ ଭଜ ଚନ୍ଦ୍ରସନ୍ନଂ ଧ୍ୟାୟେଽଶିବାଙ୍କଂ ଜଗଦେକ ଦେବଂ ।୫।

---

### ଅଥ ଲିଙ୍ଗ ନିରୂପଣଂ ।

ତତାର୍ଚ୍ଚୌ ଗଣେଶଗୌରୀସ୍ୱାମିକାର୍ତ୍ତିକନନ୍ଦିଗଣମୂର୍ତ୍ତିନ୍ ଅଶ୍ୱତ୍ଥମୂ-ଲିକୟୋଃସଂଶୁଦ୍ଧମୃତ୍ତିକୟା ବା ଗୋ ଦୁଗ୍ଧେନାଭିଧାୟ ପୁନଃ ଶମୀଦର୍ଭାଶ୍ୱତ୍ଥାମ୍ର ମୂଳବଲ୍ମୀକମୃତ୍ତିକାମେକୀକୃତ୍ୟ କର୍ପୂରଚନ୍ଦନଦ୍ୱାରୁଶୁକ୍ତୁତାଂ ମଧୁମିଶ୍ରିତଗୋଦୁଗ୍ଧେନ ବା ଦୁଗ୍ଧମିଶ୍ରିତଗଙ୍ଗାଜଲେନ ମଧୁସଞ୍ଜୁକ୍ତେନ ଯଥୋ-କ୍ତମନ୍ତ୍ରେଣାହରଣଂ କୁର୍ଯ୍ୟାତ୍ । ତତ୍ରାହରଣମନ୍ତ୍ରଃ—ଓଁ ହ୍ରୌଂ ଶ୍ରୀଂ କ୍ରୀଂ ସଃ ହରାୟ ନମଃ । ଇତି ମୃଦାହରଣଂ ।

ଅର୍ଥ—ପ୍ରଥମ ଗଣେଶ ଗୌରୀ ଶିବ କାର୍ତ୍ତିକ ନନ୍ଦୀ ଓ ଗଣ-ଦେବତା ମାନଙ୍କ ମୂର୍ତ୍ତି ଗଢ଼ିବା ସକାଶେ ଅଶ୍ୱତ୍ଥ ମୂଳରୁ ମାଟି ନେଇ ଶୁଦ୍ଧମୃତ୍ତିକାକୁ ଗୋଦୁଗ୍ଧରେ ପିଞ୍ଜିବ । ତତ୍ପରେ ଶମୀ, କୁଶ, ଅଶ୍ୱତ୍ଥ ଅମ୍ବମୂଳର ମୃତ୍ତିକା ଓ ହୁଙ୍କାମାଟି ଆଣି ଏକାଠି କରି କର୍ପୂର ଓ ଗୋଦୁଗ୍ଧରେ ଚନ୍ଦନ ଚୂନା ମିଶାଇବ ଗୋଦୁଗ୍ଧମିଶ୍ରିତଜଳରେ ମହୁ ମିଶାଇ ଓଁ ହ୍ରୌଂ ଶ୍ରୀଂ କ୍ରୀଂ ସଃ ହରାୟ ନମଃ ଏହି ମନ୍ତ୍ରପଢ଼ି ପିଞ୍ଜିବ ।

---

### ଅଥ ଲିଙ୍ଗସଂସ୍କରଣଂ ।

ଓଁ ହ୍ରୌଂ ଶ୍ରୀଂ କ୍ରୀଂ ସଃ ମହେଶ୍ୱରାୟ ନମଃ ଇତି ସଂସ୍କରଣମନ୍ତ୍ରଃ । ଅଥ ଲିଙ୍ଗଂ ହସ୍ତାଞ୍ଜଲୌ ଧୃତ୍ୱା ଆବାହୟେତ୍ । ଓଁ ହ୍ରୌଂ ହ୍ରୀଂ କ୍ରୀଂ ସଃ ପିନାକପାଣୟେ ନମଃ । କୈଳାସଶିଖରାଦ୍ରମ୍ୟାତ୍ ସମାଗଚ୍ଛ ମମ ପ୍ରଭୋ । ପୂଜାଂ ଜପଂ ଗୃହୀତ୍ୱା ତ ଯଥୋକ୍ତଫଳଦୋଭବ । ୦ । ଦେବଦେବେଶଦେବେଶଂ ସର୍ବଲୋକହିତୈଷିଣଂ । ଯଥୋକ୍ତ-ରୂପିଣଂ ଦେବ ସମ୍ମୁଖାଦାହ୍ୟାମ୍ୟହଂ । ୨ । ଇତ୍ୟାବାହ୍ୟ ପୂଜା ଉଚ୍ଚତାୟାଂ ବେଦିକାୟାଂ ପିଣ୍ଡୋପରି ତାମ୍ରପାତ୍ରେ ସ୍ଥାପୟେତ୍ । ସ୍ଥାପନ ମନ୍ତ୍ରଃ—ଓଁ ହ୍ରୌଂ ଶ୍ରୀଂ କ୍ରୀଂ ସଃ ଶୂଳପାଣୟେ ନମଃ ଇହ ସ୍ଥିତୋଭବ । ଇତି ସ୍ଥାପନଂ ।

ଅର୍ଥ—ଲିଙ୍ଗ ସଂସ୍କରଣମନ୍ତ୍ର ପଢ଼ି ଲିଙ୍ଗକୁ ଗଢ଼ିବ । ତତ୍ପରେ ସେହିଲିଙ୍ଗକୁ ହାତ ଅଞ୍ଜଳିରେ ଧରି ଆବାହନ ମନ୍ତ୍ରପଢ଼ି ଆବାହନକରି ସ୍ଥାପନ ମନ୍ତ୍ରପଢ଼ି ପିଣ୍ଡର ଉପରେ ତାମ୍ରପାତ୍ରରେ ସ୍ଥାପନ କରିବ ।

---

## ଅଥ ପ୍ରାଣପ୍ରତିଷ୍ଠାବିଧିଃ ।

ତତଃ ହସ୍ତାଭ୍ୟାଂ ପୁଷ୍ପାଣ୍ୟକ୍ଷତାନ୍ ଚ ଗୃହୀତ୍ୱା ହସ୍ତୌ ଦ୍ୱୌ ଲିଙ୍ଗୋପରି କୃତ୍ୱା ଇଦଂ ପଠେତ୍ । ଓଁ ଅଂ ହ୍ରୀଂ ଓ କ୍ରୋଂ ଯଂ ରଂ ଲଂ ବ ଶଂ ଷଂ ସଂ ହଂ ଶୂଳପାଣେଃ ପ୍ରାଣା ଇହାଗଚ୍ଛନ୍ତୁ ଇହତିଷ୍ଠନ୍ତୁ ଶୂଳପାଣେଃ ସର୍ବେ ନ୍ଦ୍ରିୟାଣି ଇହାଗଚ୍ଛନ୍ତୁ ଇହ ତିଷ୍ଠନ୍ତୁ ଅଶାଧିଷ୍ଠାନଂ କୁର୍ବନ୍ତୁ ଓଁ ଅଂ କ୍ରୋଂ ହ୍ରାଂ ହ୍ରୀଂ ଯ ର ଲ ବ ଶ ଷ ସ ହ ସଦାଶିବସ୍ୟ ପ୍ରାଣା ଇହ ଗଚ୍ଛନ୍ତୁ ଇହ ତିଷ୍ଠନ୍ତୁ ଓଁ ଅଂ ହ୍ରୀଂ କ୍ରୋଂ ସଦାଶିବସ-ସର୍ବେ ନ୍ଦ୍ରିୟାଣି ମନଶ୍ଚକ୍ଷୁଃଶ୍ରୋତ୍ରଜିହ୍ୱାଘ୍ରାଣାଦୟ ଇମେ ମୃତ୍ତି କ୍ ପାର୍ଥିବ-ଲିଙ୍ଗେ ସୁଖଂ ଚିରଂ ତିଷ୍ଠନ୍ତୁ ସ୍ୱାହା । ଓଁ ଅଂ ହ୍ରୀଂ କ୍ରୋଂ ସଦାଶିବସ-ଜୀବ ଇହସ୍ଥିତଃ କୁରୁ ଓଁ କ୍ରୋଂ ହ୍ରୀଂ ଜୁଂ ସଃ ପିନାକିନେ ନମଃ ଯଥୋକ୍ତ ରୂପିଣମ୍ । ଇହାଗଚ୍ଛ ଇହତିଷ୍ଠ ଇହ ସନ୍ନିହିତୋଭବ ସନ୍ନିରୁଦ୍ଧୋ ଭବ ମମ ପୂଜାଂ ଗୃହାଣ ଇତି ପ୍ରାଣ ପ୍ରତିଷ୍ଠା ।

ଅର୍ଥ—ଦୁଇ ହାତରେ ପୁଷ୍ପାକ୍ଷତ ଧରି ଲିଙ୍ଗ ଉପରେ ରଖି ତାହା ଉପରେ ଦୁଇ ହାତକୁ ଛତ୍ରାକାର ଯୋଡ଼ାଇ ରଖି ପ୍ରାଣପ୍ରତିଷ୍ଠା ମନ୍ତ୍ର ପଢ଼ି ପ୍ରାଣ ପ୍ରତିଷ୍ଠା କରିବ । ୧୦ ।

---

## ଅଥ ପ୍ରାର୍ଥନାମନ୍ତ୍ରଃ ।

ପୁଷ୍ପାକ୍ଷତାନ୍ ଗୃହୀତ୍ୱା ପ୍ରାର୍ଥୟେତ୍ । ଓଁ କ୍ରୋଂ ହ୍ରୀଂ ଜୁଂସଃ-ପିନାକ ପାଣିନେ ନମଃ । ସ୍ୱାମିନ୍ ସର୍ବଜଗନ୍ନାଥ ଯାବତ୍ ପୂଜାଂ କରୋମ୍ୟହଂ । ତାବତ୍ତ୍ୱଂ ପ୍ରୀତିଭାବେନ ଲିଙ୍ଗେଽସ୍ମିନ୍ ସନ୍ନିଧିଂ କୁରୁ । ସ୍ୱାହା ଇତି ମନ୍ତ୍ରେଣ ହସ୍ତଗତ ପୁଷ୍ପାକ୍ଷତାନ୍ ଲିଙ୍ଗୋପରି ନ୍ୟସେତ୍ । ଇତି ପ୍ରାର୍ଥନା । ଅଥଶିବଲିଙ୍ଗଦକ୍ଷିଣସ୍ଥାନେ ଗଣପତ୍ୟାଦିମୂର୍ତ୍ତିଃ ସ୍ଥାପ୍ୟ ଯଥୋକ୍ତମନ୍ତ୍ରୈଃ ସମ୍ପୂଜୟେତ୍ । ତତୋ ବାମାଙ୍ଗେ ଉମାଦେବ୍ୟୈ ସ୍ଥାନାଦିକଞ୍ଚ ସମ୍ପୂଜୟେତ୍ । ତସ୍ୟମନ୍ତ୍ରଃ । ଓଁ ଭଗବତ୍ୟୈ ଉମାଦେବ୍ୟୈ ଶଙ୍କର ପ୍ରିୟାୟୈ ନମଃ । ୦ ।

ଅର୍ଥ—ତତ୍ପରେ ହସ୍ତରେ ପୁଷ୍ପାକ୍ଷତ ଧରି ପ୍ରାର୍ଥନା ମନ୍ତ୍ର ପଢ଼ି ଲିଙ୍ଗ

ଉପରେ ଦେବ । ତଦନନ୍ତର ଶିବଲିଙ୍ଗର ଦକ୍ଷିଣଭାଗରେ ଗଣ-
ପତ୍ୟାଦି ମୂର୍ତ୍ତିଙ୍କି ଯଥୋକ୍ତ ମନ୍ତ୍ରରେ ପୂଜା କରିବ ଓ ଶିବଙ୍କର ବାମା-
ଙ୍ଗରେ ମନ୍ତ୍ର ପଢ଼ି ଉମାଦେବୀଙ୍କର ସ୍ନାନାଦି ପୂଜା କରିବ । ୦ ।

---

ଅଥ ଧ୍ୟାନଂ ।

ପୁଷ୍ପାଞ୍ଜଳିନା ଗୃହୀତ୍ୱା ଓଁ ହ୍ରୋଁ ହ୍ରୀଂ ହୂଂ ସଃ ପଶୁପତୟେ ନମଃ ।

ତତୋ ମଣିସ୍ତମ୍ଭବଦ୍ଧନମାନଂ
ସୁବର୍ଣ୍ଣସ୍ତୂଂ ଦ୍ୱାର କପାଟ ତୋରଣଂ ।
ମହାର୍ହ ଜାଲାମଳ ବନ୍ଦ୍ରବେଦିକଂ
ତଦେବ ଧ୍ୟାୟେନ୍ମୃତ୍ତିଶରେ ଶିବାଲୟଂ ।
ସନ୍ତପ୍ତ ହେମ କଳଶୈ କନ୍ଦୁଳ ବିଚିତ୍ରୈଃ
ପ୍ରୋଦ୍ଭାସିତଂ ଷ୍ଟୈତ ସୌଧକଟାଭିରମ୍ୟଂ ।
ରମ୍ୟଂ ଚ ତଚ୍ଛିବପୂତଂ ବରପୀଠମଧ୍ୟେ
ଲିଙ୍ଗଂ ତ ଭକ୍ତିସହିତଂ ମନସା ସ୍ମରେତ୍ତ । ୧ ।
ସର୍ବଜ୍ଞଜ୍ଞାନବିଜ୍ଞାନପ୍ରଦାନୈକମହାତ୍ମନେ ।
ନମସ୍ତେ ଦେବଦେବେଶ ସର୍ବଭୂତହିତେରତଃ । ୩ ।
ଅନନ୍ତକାନ୍ତିସମ୍ପନ୍ନ ଅନନ୍ତାସନସଂସ୍ଥିତ ।
ଅନନ୍ତଶକ୍ତିଶୋଭାଢ୍ୟ ପଦ୍ମେଶ ନମୋଽସ୍ତୁ ତେ । ୪ ।
ପାହି ପାହି ଗୁଣାତୀତ ଉତ୍ପତ୍ତିସ୍ଥିତିକାରକ ।
ସର୍ବାର୍ଥସାଧନୋପାୟ ବିଶ୍ୱେଶ୍ୱର ନମୋଽସ୍ତୁ ତେ । ୫ ।
ସ୍ୱଚ୍ଛବାନ୍ନିର୍ମଳାକାର ସର୍ବବ୍ୟାଧିବିନାଶକ ।
ଯୋଗିନ୍ଦ୍ରେଶ ମହାଯୋଗି ଯୋଗେଶ୍ୱର ନମୋଽସ୍ତୁ ତେ । ୬ ।
ପାତାଳେ ଗୃହ୍ନରକ୍ଷେ ଦଶଦର୍ଶି ଗଗନେଇସ୍ତ ସର୍ବଶୈଳେ ।
ସିନ୍ଧୌ ନେତ୍ରେ ଚ ବାସ୍ତେ ଷୈଡ଼ଜଳପବନେ ସ୍ଥାବରେ ଜଙ୍ଗମେ ବା
ବୀଜଂ ସର୍ବୌଷଧୀନାମସୁରସୁରପଥେ ପୁଷ୍ପମଧ୍ୟେ ତୃଣାଗ୍ରେ ।
ସର୍ବତ୍ରାପି ଶିବୋଽସ୍ମି ଯତ ବଦତ ପ୍ରମାଣାସ୍ତ୍ରିବେଦୈର୍ବୋ ଦ୍ୱିଜାସ୍ତୁ ।

---

### ଅଥ ଲିଙ୍ଗାଷ୍ଟକଂ ।

ଓଁ ବ୍ରହ୍ମମୁରାରିସୁରାର୍ଚ୍ଚିତଲିଙ୍ଗଂ ନିର୍ମଳଭାସିତଶୋଭିତଲିଙ୍ଗଂ ।
ଜନ୍ମଜ ଦୁଃଖବିନାଶକଲିଙ୍ଗଂ ତଂ ପ୍ରଣମାମି ସଦା ଶିବଲିଙ୍ଗଂ ।୧।
ଦେବମୁନିପ୍ରବରାର୍ଚ୍ଚିତଲିଙ୍ଗଂ କାମଦହନକରୁଣାକରଲିଙ୍ଗ।
ରାବଣଦର୍ପବିନାଶନଲିଙ୍ଗଂ ତଂ ପ୍ରଣମାମି ସଦା ଶିବଲିଙ୍ଗଂ ।୨।
ସର୍ବସୁଗନ୍ଧିସୁଲେପିତଲିଙ୍ଗଂ ବୁଦ୍ଧିବିବର୍ଦ୍ଧନକାରଣଲିଙ୍ଗଂ ।
ସିଦ୍ଧସୁରାସୁରବନ୍ଦିତଲିଙ୍ଗଂ ତଂ ପ୍ରଣମାମି ସଦା ଶିବଲିଙ୍ଗଂ ।୩।
ସ୍ୱର୍ଣ୍ଣମହାମଣିଭୂଷିତଲିଙ୍ଗଂ ଫଣିପତିବେଷ୍ଟିତଶୋଭିତଲିଙ୍ଗଂ ।
ଦକ୍ଷସୁଯଜ୍ଞବିନାଶନଲିଙ୍ଗଂ ତଂ ପ୍ରଣମାମି ସଦା ଶିବଲିଙ୍ଗଂ ।୪।
କୁଙ୍କୁମଚନ୍ଦନଲେପିତଲିଙ୍ଗଂ ପଙ୍କଜହାରସୁଶୋଭିତଲିଙ୍ଗଂ ।
ସଞ୍ଚିତପାପବିନାଶନଲିଙ୍ଗଂ ତଂ ପ୍ରଣମାମି ସଦା ଶିବଲିଙ୍ଗଂ ।୫।
ଦେବଗଣାର୍ଚ୍ଚିତସେବିତଲିଙ୍ଗଂ ଭାବୈର୍ଭକ୍ତିଭିରେବଚଲିଙ୍ଗଂ ।
ଦିନକରକୋଟିପ୍ରଭାକରଲିଙ୍ଗଂ ତଂ ପ୍ରଣମାମି ସଦା ଶିବଲିଙ୍ଗଂ ।୬।
ଅଷ୍ଟଦଳୋପରିବେଷ୍ଟିତଲିଙ୍ଗଂ ସର୍ବସମୁଦ୍ଭବକାରଣଲିଙ୍ଗଂ ।
ଅଷ୍ଟଦରିଦ୍ରବିନାଶନଲିଙ୍ଗଂ ତଂ ପ୍ରଣମାମି ସଦା ଶିବଲିଙ୍ଗଂ ।୭।
ସୁରଗୁରୁସୁରବରପୂଜିତଲିଙ୍ଗଂ ସୁରବନପୁଷ୍ପସଦାର୍ଚ୍ଚିତଲିଙ୍ଗଂ ।
ପରମପଦଂ ପରମାତ୍ମକଲିଙ୍ଗଂ ତଂ ପ୍ରଣମାମି ସଦା ଶିବଲିଙ୍ଗଂ ।୮।
ଲିଙ୍ଗମଧ୍ୟେ ଜଗତ୍ ସର୍ବଂ ତ୍ରୈଲୋକ୍ୟଂ ସଚରାଚରଂ ।
ଲିଙ୍ଗଂ ବ୍ରହ୍ମ ପରଂ ନାସ୍ତି ତସ୍ମାଲ୍ଲିଙ୍ଗଂ ପ୍ରପୂଜୟେତ୍ ।୯।

---

### ଅଥ ଲିଙ୍ଗ ସ୍ନାନଂ

ପଞ୍ଚାମୃତେନ ଗନ୍ଧୋଦକେନ ବା ଅଭାବେ ଶୀତଳତୈର୍ଥିକ-କୂପୋଦକେନ ବା ସ୍ନାପୟେତ୍ । ତସ୍ୟ ମନ୍ତ୍ରଃ ।—ଓଁ ହୌଂ ହ୍ରୀଂ ଜୁଂସଃ ପଶୁପତୟେ ନମଃ ଓଁ ନମଃ ଶମ୍ଭବାୟ ଚ ମୟୋଭବାୟ ଚ ନମଃ ଶଙ୍କରାୟ ଚ ମୟସ୍କରାୟ ଚ ନମଃ ଶିବାୟ ଚ ଶିବତରାୟ ଚ ।

ଅର୍ଥ—ପୂର୍ବୋକ୍ତ ଲିଙ୍ଗାଷ୍ଟକ ଭକ୍ତିଯୁକ୍ତହୋଇ ପଢିବ ।

ତତ୍ପରେ ପଞ୍ଚାମୃତ ତମ୍ବା ଗଙ୍ଗୋଦକ ତଦଭାବରେ ଗୋଦୁଗ୍ଧରେ କୂପଜଳ ମିଶାଇ ମନ୍ତ୍ର ପଢ଼ି ସ୍ନାନ କରାଇବ । ୦ ।

---

### ଅଥ ଷୋଡଶୋପଚାରପୂଜା ।

ମନ୍ତ୍ରୋ ଯଥା —ଓଁ ହ୍ରୋଁ ଷ୍ଟ୍ରୁଂ କ୍ରୁଂ ସଃ ଶିବାୟ ଚନ୍ଦନଂ ସମ-ର୍ପୟାମି ।୧। ଓଁ ହ୍ରୋଁ ଷ୍ଟ୍ରୁଂ କ୍ରୁଂ ସଃ ଶିବାୟ ସ୍ୱେତନାଂ ସମର୍ପୟାମି ।୨। ଏବ ଅନେନୈବ ମନ୍ତ୍ରେଣ ଅକ୍ଷତାନ୍ ୩ ପୁଷ୍ପାଣି ।୪। ଏକା-ଦଶଦୂର୍ବାଙ୍କୁରାଣି ।୫। ଏକାଦଶ ବିଲ୍ୱ ପତ୍ରାଣି ।୬। ଧତ୍ତୁରଫଳ-ଙ୍କିତଂ ଧୂପଂ ।୭। ଏକାଦଶବର୍ତ୍ତିଘୃତଦୀପଂ ।୮। ନୈବେଦ୍ୟଂ ।୯। ନାନାଫଳାନି । ୦ । ଆଚମନଂ ।୧୧। ଲବଙ୍ଗ କର୍ପୂରଯୁକ୍ତଂ ତାମ୍ବୁଳଂ ।୧୨। ପୂଗୀଫଳଂ ।୧୩। ଦକ୍ଷିଣା ।୧୪। କର୍ପୂରଦୀପଃ ।୧୫। ନମସ୍କାରଃ ।୧୬।

---

### ଅଥ ଆବରଣପୂଜାପ୍ରକାରଃ ।

ତତ୍ରାନନ୍ତମୂର୍ତ୍ତିଲିଙ୍ଗଂ ଷୋଡ଼ଶୋପଚାରେଣ ବା ପଞ୍ଚୋପଚାରେଣ ବା-ଚନ୍ଦ ସାମାନ୍ୟତସ୍ତୁ ଗନ୍ଧାକ୍ଷତପୁଷ୍ପଧୂପଦୀପନୈବେଦ୍ୟାନ୍ ମିଶ୍ରଭୂତାନ୍ ପାତ୍ରେ କୃତ୍ୱା ତତ୍ପାତ୍ରଂ ବାମକରେ ଧୃତ୍ୱା ଶିବଲିଙ୍ଗସ୍ୟ ପରିତୋଽଷ୍ଟ-ଦଳପଦ୍ମସ୍ୟ ଯଦ୍ୱା ଶିବସ୍ଥାନସ୍ୟ ପୂର୍ବବର୍ତ୍ତିକାଦ୍ୟାରଭ୍ୟ ଏକୈକମୂର୍ତ୍ତି ପୂଜନଂ ଚରେତ୍ ଯଥା—

ପୂର୍ବେ—ଓଁ ଶର୍ବାୟ କ୍ଷିତିମୂର୍ତ୍ତୟେ ନମଃ ।
ଈଶାନେ—ଓଁ ଭବାୟ ଜଳମୂର୍ତ୍ତୟେ ନମଃ ।
ଉତ୍ତରେ—ଓଁ ରୁଦ୍ରାୟ ତେଜୋମୂର୍ତ୍ତୟେ ନମଃ ।
ବାୟବ୍ୟେ—ଓଁ ଉଗ୍ରାୟ ବାୟୁମୂର୍ତ୍ତୟେ ନମଃ ।
ପଶ୍ଚିମେ—ଓଁ ଭୀମାୟ ଆକାଶମୂର୍ତ୍ତୟେ ନମଃ ।
ନୈଋତେ—ଓଁ ପଶୁପତୟେ ଯଜମାନମୂର୍ତ୍ତୟେ ନମଃ ।
ଦକ୍ଷିଣେ—ଓଁ ମହାଦେବାୟ ସୋମମୂର୍ତ୍ତୟେ ନମଃ ।

ଆଗ୍ନେୟ୍ୟାଂ—ଓଁ ଈଶାନାୟ ସୂର୍ଯ୍ୟମୂର୍ତ୍ତୟେ ନମଃ ।
ଇତ୍ୟାବରଣପୂଜାସମ୍ବନ୍ଧ୍ୟଷ୍ଟମୂର୍ତ୍ତିପୂଜନଂ ।

ଅର୍ଥ—ଶିବଲିଙ୍ଗର ସମସ୍ତ ଅଷ୍ଟଦଳ ପଦ୍ମରେ ଅମ୍ଭା ଶିଶସ୍ୱକାର ଅଷ୍ଟଦଳପଦ୍ମରେ ପୂର୍ବକର୍ଣ୍ଣିକାଠାରୁ କ୍ରମରେ ଷୋଡ଼ଶୋପଚାର ବା ପଞ୍ଚୋପଚାରପୂଜାକରିବ । ଅଥବା ଗନ୍ଧ ଅକ୍ଷତ ପୁଷ୍ପ ଧୂପ ଦୀପ ନୈବେଦ୍ୟ ଗୋଟିଏ ପାତ୍ରରେ ଏକାଠି ରଖି ନେଇ ଆଠଗୋଟି ଦଳରେ ଅଷ୍ଟମୂର୍ତ୍ତି ପୂଜା କରିବ ।

## ଅଥ ବଳିଦାନଂ ।

ତତୋ ଦେଶକାଲୌ ସ୍ମୃତ୍ୱା ବାଞ୍ଛିତାର୍ଥଫଳପ୍ରାପ୍ତ୍ୟେ କୃତପୂଜନସ୍ୟ ସାଙ୍ଗତାସିଦ୍ଧ୍ୟର୍ଥଂ ଯଥାଶକ୍ତି ସଂଖ୍ୟାକଂ ଯତ୍ ପଦାର୍ଥଂ ପୂର୍ବମେବ କଳ୍ପିତଂ ତଦୈକୈକଂ ତଣ୍ଡୁଲାୟତସହିତଂ ପ୍ରତ୍ୟେକଂ ଷଡ଼କ୍ଷରେଣ ଶିବାର୍ପଣଂ କୁର୍ଯ୍ୟାତ୍ । ଅନ୍ତେ ତୁ ସ୍ୱପଦାର୍ଥ ଜାତଫଳଂ ମୂଳମନ୍ତ୍ରେଣ ଦଦ୍ୟାତ୍ । ଯଥା—ଓଁ ହ୍ରୀଁ ହ୍ରୌଂ ଜୁଂ ସଃ ନମଃଶିବାୟ ପ୍ରପନ୍ନପାରିଜାତାୟ ସ୍ୱାହା । ଏତାନ୍ ଗନ୍ଧାକ୍ଷତପୁଷ୍ପଧୂପଦୀପନୈବେଦ୍ୟାଦୀନ୍ ମୟା ଯଥୋକ୍ତବିଧିନା ଯାନ୍ ଯାନ୍ ସମର୍ପିତାନ୍ ତୈରେତଦ୍ଭାଗଫଲ ବଳିଦାନସମର୍ପଣମାତ୍ରେଣ ପରମାତ୍ମା ଶିବୋ ମୟି ପ୍ରୀୟତାଂ ମମାମୁକ-କାମନାମୁକ୍ତାବଧି ଦିନାନ୍ତରେଣ ବଧ୍ୱଦୋଷାବଲମ୍ବଂ କୃତ୍ୱା ଶୀଘ୍ରମେବ ମମ କାର୍ଯ୍ୟଂ ସାଧୟ ସାଧୟ ଏଷବଳିଃ ଶିବାୟ ସାଙ୍ଗାୟ ନମଃ ସ୍ୱାହା । ଇତି ବଳିଦାନଂ ।

---

## ଅଥ ସ୍ତୋତ୍ରଂ ।

ତ୍ୱଂ ମାତା ସର୍ବଲୋକାନାଂ ତ୍ୱମେବ ଜଗତଃ ପିତା ।
ତ୍ୱଂ ଭ୍ରାତା ତ୍ୱଂ ସୁହୃନ୍ମିତ୍ରଂ ତ୍ୱଂ ପ୍ରିୟସ୍ତ୍ୱଂ ପିତାମହଃ । ୧ ।
ନମସ୍ତେ ଭଗବନ୍ ରୁଦ୍ର ଭାସ୍କରାମିତତେଜସେ ।
ନମୋ ଭବାୟ ଦେବାୟ ରସାୟାମ୍ବୁମୟାୟ ଚ । ୨ ।
ସର୍ବାୟ କ୍ଷିତିରୂପାୟ ସଦାସୁରଭିରୂପିଣେ ।

ପଶୂନାଂ ପତୟେ ତୁଭ୍ୟଂ ପାବକାମିତତେଜସେ । ୩ ।
ଭୀମାୟ ବ୍ୟୋମରୂପାୟ ଯଶୋରୂପାୟ ତେ ନମଃ ।
ମହାଦେବାୟ ସୋମାୟ ଅନନ୍ତାୟ ନମୋ ନମଃ । ୪ ।
ଉଗ୍ରାୟ ଯଜମାନାୟ ଯୋଗିନେ କର୍ମଯୋଗିନେ ।
ନମସ୍ତେ କଳ୍ପବୃକ୍ଷାୟ ପ୍ରତ୍ୟକ୍ଷଫଳଦାୟିନେ । ୫ ।
ପାର୍ଥିବାନାଂ ଚ ଲିଙ୍ଗାନାଂ ଯନ୍ମୟା ପୂଜନଂ କୃତଂ ।
ତେନ ମେ ଭଗବାନ୍ ରୁଦ୍ର ବାଞ୍ଛିତାର୍ଥଂ ପ୍ରଯଚ୍ଛ ତୁ । ୬ ।
ଶିବାଗ୍ରେ ପୂଜନଂ କୃତ୍ୱା ସ୍ତୋତ୍ରମେତତ୍ ପଠେତ୍ ସଦା ।
ସର୍ବାର୍ଥସାଧକୋପାୟମେତ ଦେବୈର୍ବିଜଣ୍ଟିତଂ । ୭ ।

ଅଥ ମୂଳମନ୍ତ୍ରଜପବିଧିଃ ।

ଋଷିଛନ୍ଦୋ ଯଥା—ଓଁ ଅସ୍ୟ ଶ୍ରୀ ସଦାଶିବମନ୍ତ୍ରସ୍ୟ । ବାମଦେବଋଷିଃ । ପଂକ୍ତିଶ୍ଛନ୍ଦଃ । ଶ୍ରୀ ସଦାଶିବୋ ଦେବତା । ମମାଭୀଷ୍ଟଫଳପ୍ରାପ୍ତୟେ ଜପେ ବିନିଯୋଗଃ । ମନ୍ତ୍ରଃ । ଓଁ ହ୍ରୌଂ ଶ୍ରୂଂ ଜୂଂ ସଃ ଶିବାୟ ନମଃ ପ୍ରସନ୍ନ ପାରିଜାତାୟ ସ୍ୱାହା । ଇମଂ ମନ୍ତ୍ରଂ ନିତ୍ୟମଷ୍ଟୋତ୍ତରଶତଂ ଜପେତ୍ ।୧୦।

---

ଅଥ ହୋମ ବିଧିଃ ।

ପଶ୍ଚାଦନେନ ନିତ୍ୟମେବାଦଶାନ୍ତୁଢଂ ଜୁହୁୟାତ୍ ।
ତତ୍ର ପ୍ରଥମଂ ହନୁମନ୍ତ୍ରୈର୍ନିପତାକାପୂଜନଂ ।

କେବଳଂ ଚନ୍ଦନସ୍ତ୍ରଧୂପଦୀପନୈବେଦ୍ୟାନ୍ତଂ ତନ୍ତ୍ରେଣୈବ କୁର୍ଯ୍ୟାତ୍ । ଅଥୈବ ଗର୍ଭବରପୂଜନଂ କୃତ୍ୱାଗ୍ନିବେଦକାଗ୍ନ୍ୟାମଗ୍ନିଂ ସ୍ଥାପ୍ୟ ଅଦୌ ଘୃତେନୈବ ଚତୁସ୍ତ୍ରାହୁତୀର୍ଦ୍ଦଦ୍ୟାତ୍ । ତଦ୍ୟଥା—ଓଁ ପ୍ରଜାପତୟେ ସ୍ୱାହା ଇଦଂ ପ୍ରଜାପତୟେ । ଓଁ ଇନ୍ଦ୍ରାୟ ସ୍ୱାହା ଇଦମିନ୍ଦ୍ରାୟ । ଓଁ ଅଗ୍ନୟେ ସ୍ୱାହା ଇଦମଗ୍ନୟେ । ଓଁ ସୋମାୟ ସ୍ୱାହା ଇଦଂ ସୋମାୟ । ହୁତଶେଷଂ ତୁ ସ୍ରୁବେଣୈବ ଜଳପାତ୍ରେ ପ୍ରକ୍ଷିପେତ୍ । ତତୋ ଗଣେଶାଦିଭ୍ୟୋ ନମଃ ଇତ୍ୟନେନ ମନ୍ତ୍ରେଣ ଏକୈକଂ ହବ୍ୟେନ ଏବ ଅନ୍ତୁଢଂ ଦତ୍ୱା ପୁନରପି ସ୍ୱ ସ୍ୱ ମନ୍ତ୍ରୈର୍ନବଗ୍ରହାଣାମପି ଅନ୍ତୁଖାର୍ଦ୍ଦଦ୍ୟାତ୍ ।

ତତୋ ମୂଳମନ୍ତ୍ରେଣ ଏକାଦଶାଞ୍ଜଳୀର୍ଦ୍ଦଦ୍ୟାତ୍ । ଅଥ କାମପୂରକ ମନ୍ତ୍ରେଣ ଜପ୍ୟଂ ଏକବିଂଶତ୍ୟଧିକଶତସଂଖ୍ୟା ଅଞ୍ଜଳୀର୍ଦ୍ଦଦ୍ୟାତ୍ । କାମରୂପକମନ୍ତ୍ରସ୍ତୁ ଓଁ ହ୍ରୌଂ ହ୍ରୀଂ ଜୂଂ ସଃ ନମଃଶିବାୟ ତ୍ୱଂ ଦାତା ସର୍ବଲୋକାନାଂ କୃପୟା କୁରୁ ମହ୍ୟଂ ପ୍ରଦେହି ୧୦ କାର୍ଥେ ସ୍ୱାହା ॥

ଅଥ ତର୍ପଣବିଧିଃ ।

ତତ ଗୋଦୁଗ୍ଧଂ ଗଙ୍ଗୋଦକାଦ୍ୟଂ ସତ ଜଳୈର୍ନୈବାଦଶ ଦ୍ୱାକ୍ୟୈଃ କୁଶାଗ୍ରଗ୍ରଥିତୈର୍ବା ଦେବତୀର୍ଥେନ ତର୍ପୟେତ୍ । ଓଁ ଶିବାୟ ନମଃ ଶିବଂ ତର୍ପୟାମି ୨ । ଓଁ ଭବାୟ ନମଃ ଭବଂ ତର୍ପୟାମି । ୨ । ଓଁ ଈଶାନାୟ ନମଃ ଈଶାନଂ ତର୍ପୟାମି । ଓଁ ଉଗ୍ରାୟ ନମଃ । ଉଗ୍ରଂ ତର୍ପୟାମି । ଓଁ ମୃଡାୟ ନମଃ ମୃଡଂ ତର୍ପୟାମି । ଓଁ ଶଶିଶେଖରାୟ ନମଃ ଶଶିଶେଖରଂ ତର୍ପୟାମି । ଓଁ ଶଂକରାୟ ନମଃ ଶଂକରଂ ତର୍ପୟାମି । ଓଁ ବହ୍ନିରୂପାୟ ନମଃ ବହ୍ନିରୂପଂ ତର୍ପୟାମି । ଓଁ କପର୍ଦ୍ଦିନେ ନମଃ କପର୍ଦ୍ଦିନଂ ତର୍ପୟାମି । ଓଁ ତ୍ର୍ୟମ୍ବକାୟ ନମଃ ତ୍ର୍ୟମ୍ବକଂ ତର୍ପୟାମି । ଓଁ ରୁଦ୍ରାୟ ନମଃ ରୁଦ୍ରଂ ତର୍ପୟାମି । ୦ ।

ଅଥ ପୁଷ୍ପାଞ୍ଜଳିଦାନଂ ।

ତତ ମୂଳମନ୍ତ୍ରୋଚ୍ଚାର୍ଯ୍ୟ ଗୋଦୁଗ୍ଧଶର୍କରାଦିମିଶ୍ରିତଜଳସ୍ୟ ଧାରାଂ ଦତ୍ୱା ପୁଷ୍ପାଞ୍ଜଳିଂ ଚ ସମର୍ପୟନ୍ ସଂପ୍ରାର୍ଥୟେତ୍ । ତଦ୍ୟଥା—ଓଁ ହ୍ରୌଂ ହ୍ରୀଂ ଜୂଂ ସଃ ଶିବାୟ ନମଃ ପ୍ରପନ୍ନପାରିଜାତାୟ ସ୍ୱାହା । ୦ ।

ଅଥ ଶିବସ୍ତବଃ ।

ନମଃ ଶିବାୟ ସାମ୍ବାୟ ସଗଣାୟ ସସୂନବେ ।
ଜପେୟସ୍ତୁପି ସ୍ୱଂଶାନଂ ଲିଙ୍ଗସ୍ୟପର ଶାଶ୍ୱତଂ । ୧ ।
ନମଃ ଶିବାୟ ସାମ୍ବାୟ କାରଣାୟ ପୃଥେ ଭବେ ।
ନିବେଦୟାମି ଶମ୍ଭୋ ତ୍ୱଂ ଗତିଃ ପରମେଶ୍ୱର । ୨ ।
ଭାବନ୍ତ୍ରିଦ୍ୱନ୍ଦ୍ୱପାଶାସ୍ତୁ ଛିତ୍ୱୋଽହଂ ସଦାମୃତେ ।
କୃପାବଧେ ଭବ ଶମ୍ଭୋ ଭୂତନାଥ ପ୍ରସୀଦ ମେ । ୩ ।

ଅଜ୍ଞାନାଦ୍ ଯଦି ବା ଜ୍ଞାନାଦ୍ୟତ୍ପୂଜାଦିକଂ ମୟା ।
କୃତଂ ତଦସ୍ତୁ ସଫଳଂ କୃପୟା ତବ ଶଙ୍କର । ୪ ।

---

ଅଥ ପ୍ରଦକ୍ଷିଣାଂ ।

ଯାନି ଯାନି ଚ ପାପାନି ଦୁଃଖାନି ଚ ମହେଶ୍ୱର ।
ତାନି ତାନି ବିନଶ୍ୟନ୍ତୁ ପ୍ରଦକ୍ଷିଣ ପଦେ ପଦେ ।

---

ଅଥ ସ୍ତୁତିଃ ।

ହେ ଚନ୍ଦ୍ରଚୂଡ଼ ମଦନାନ୍ତକ ଶୂଳପାଣେ
ସ୍ଥାଣୋ ଗିରିଶ ଗିରିଜେଶ ମହେଶ ଶମ୍ଭୋ ।
ଭୂତେଶ ଭୀତଭୟସୂଦନ ମାମନାଥଂ
ସଂସାରଦୁଃଖଗହନାଜ୍ଜଗଦୀଶ ରକ୍ଷ । ୧ ।
ହେ ପାର୍ବତୀହୃଦୟବଲ୍ଲଭ ଚନ୍ଦ୍ରମୌଳେ
ଭୂତାଧିପ ସୁରବର ତ୍ରିଦଶାଧିନାଥ ।
ହେ ବାମଦେବ ଭବ ରୁଦ୍ର ପିନାକପାଣେ
ସଂସାରଦୁଃଖଗହନାଜ୍ଜଗଦୀଶ ରକ୍ଷ । ୨ ।
ହେ ନୀଳକଣ୍ଠ ବୃଷଭଧ୍ୱଜ ପଞ୍ଚବକ୍ତ୍ର
ଲୋକେଶ ଶେଷବଲୟ ପ୍ରମଥେଶ ଶର୍ବ ।
ହେ ଧୂର୍ଜଟେ ପଶୁପତେ ଗିରିଜାପତେ ମାଂ
ସଂସାରଦୁଃଖଗହନାଜ୍ଜଗଦୀଶ ରକ୍ଷ । ୩ ।
ହେ ବିଶ୍ୱନାଥ ଶିବ ଶଙ୍କର ଦେବଦେବ
ଗଙ୍ଗାଧର ପ୍ରମଥନାୟକ ନନ୍ଦିକେଶ ।
ବାଣେଶ୍ୱରାନ୍ଧକରିପୋ ହର ଲୋକନାଥ
ସଂସାରଦୁଃଖଗହନାଜ୍ଜଗଦୀଶ ରକ୍ଷ । ୪ ।
ବାରାଣସୀପୁରପତେ ମଣିକର୍ଣ୍ଣିକେଶ
ବୀରେଶ ଦକ୍ଷମଖକାଳ ବିଭୋ ଗଣେଶ ।

ସର୍ବାଙ୍ଗ ସର୍ବହୃଦୟୈକନିବାସ ନାଥ
ସଂସାରଦୁଃଖଗହନାଜ୍ଜଗଦୀଶ ରକ୍ଷ । ୫ ।

ଶ୍ରୀମନ୍ମହେଶ୍ୱର କୃପାମୟ ହେ ଦୟାଳୋ
ହେ ବ୍ୟୋମକେଶ ଶିତିକଣ୍ଠ ଗଣାଧିନାଥ ।
ଭସ୍ମାଙ୍ଗରାଗ ନୃକପାଳ କପାଳମାଲ
ସଂସାରଦୁଃଖଗହନାଜ୍ଜଗଦୀଶ ରକ୍ଷ । ୬ ।

କୈଳାସପଙ୍କଜନିବାସ ବୃଷାକପୀଶ
ମୃତ୍ୟୁଞ୍ଜୟ ତ୍ରିନୟନ ତ୍ରିଜଗନ୍ନିବାସ ।
ନାରାୟଣପ୍ରିୟ ଦୟାମୟ ଶକ୍ତିନାଥ
ସଂସାରଦୁଃଖଗହନାଜ୍ଜଗଦୀଶ ରକ୍ଷ । ୭ ।

ବିଶ୍ୱେଶ ବିଶ୍ୱଭବନ ସ୍ଥିତ ବିଶ୍ୱରୂପ
ବିଶ୍ୱାତ୍ମକତ୍ରିଭୁବନୈକ ଗୁଣେଶ ଭବେଶ ।
ହେ ବିଶ୍ୱବନ୍ଧ୍ୟ କରୁଣାମୟ ଦୀନବନ୍ଧୋ
ସଂସାରଦୁଃଖଗହନାଜ୍ଜଗଦୀଶ ରକ୍ଷ । ୮ ।

ଗୌରୀବିଳାସ ଭୁବନାୟ ମହେଶ୍ୱରାୟ
ପଞ୍ଚାନନାୟ ଶରଣାଗତକଳ୍ପକାୟ ।
ସର୍ବାୟ ସର୍ବଜଗତାମଧିପାୟ ତସ୍ମୈ
ଦାରିଦ୍ର୍ୟଦୁଃଖଗହନାଜ୍ଜଗଦୀଶ ରକ୍ଷ । ୯ ।

ଇତି ଶ୍ରୀମଚ୍ଛଙ୍କରାଚାର୍ଯ୍ୟ ବିରଚିତଂ ଶିବସ୍ତୋତ୍ରଂ ସମ୍ପୂର୍ଣ୍ଣଂ ।

ଇତି ସ୍ତୁତ୍ୱା ଗଲ୍ଲନାଦଂ କୁର୍ଯ୍ୟାତ୍ । ଅଥାପି ଶକ୍ତିଶ୍ଚେତ୍ତର୍ହି
ଶିବକବଚମପି ଶ୍ରାବୟେଦ୍ୱା ।

ଅଥ ବିସର୍ଜନଂ ।

ପୁଷ୍ପାକ୍ଷତାନ ଗୃହୀତ୍ୱା ଓଁ ମହାଦେବାୟ ଯଜମାନମୂର୍ତ୍ତୟେ ନମଃ ।
କୃତାକୃତାଙ୍ଗପ୍ରାଂ ସମସ୍ତ ମମକୃତାଂ ପୂଜାଂ ଚ ଗୃହୀତ୍ୱା ମମ ହୃଦି ମହା-
କୈଳାସେ ବା ଯଥାସୁଖଂ ତିଷ୍ଠ ।

ଇତି ଶ୍ରୀସକାମ ଶିବପୂଜା ସମାପ୍ତା ।

*Printed by N N Sahoo Arunodoya Press Cuttack*

# ବିଜ୍ଞାପନ ।

କୌଣସି ପୁସ୍ତକବ୍ୟବସାୟୀ ନଗଦ ଶହେଟଙ୍କା ଦେଲେ, ପାଞ୍ଚଟଙ୍କାର ପୁସ୍ତକ ପାଇବେ ।

| ପୁସ୍ତକର ନାମ ଓ ମୂଲ୍ୟ । | |
|---|---|
| ଶ୍ରୀକୃଷ୍ଣସଭା | ଟ ୧। |
| ଏକାଦଶୀମାହାତ୍ମ୍ୟ | ଟ ୦ ୳ |
| ସ୍ତ୍ରୀସ୍ୱଭାବ | ଟ ୦ ।✓ |
| ଏକାଦଶସ୍କନ୍ଧ (ଟୀକାସାର) | ଟ ୦ । |
| ବଦଭାବଳାପ | ଟ ୦ । |
| ଠୁଣ୍ଠୁଣ୍ଟୁଣ | ଟ ୦ । |
| ପ୍ରାକୃତବେଉଳ | ଟ ୦ । |
| ମହାମେଳାବର୍ଣ୍ଣନ | ଟ ୦ । |
| ସଙ୍ଗୀତସୁଧାନିଧି | ଟ ୦ । |
| ବାକ୍ୟାବଳୀ | ଟ ୦ ✓ |
| ଶୋଭବତୀ | ଟ ୦ ✓ |
| ହନୁମାନ୍‌ପ୍ରଶ୍ନ | ଟ ୦ ✓୨ |
| ପାଞ୍ଚଭୂତ ମାନେବନ୍ଧ | ଟ ୦ ✓୨ |
| ଚଉତପକ | ଟ ୦ ✓୨ |
| ଦେହଭଚୋରା | ଟ ୦ ✓୨ |
| ଭକ୍ତିଭ ଗୀତିକା | ଟ ୦ ✓୨ |
| ଭୂଗୋଳସାର | ଟ ୦ ✓୨ |
| ମାନସ୍ତାବ | ଟ ୦ ✓ |
| ପାଟୀଗଣିତ | ଟ ୦ ✓ |
| କଟକଦର୍ପଣ | ଟ ୦ ✓ |
| ଭ୍ରମରବଢ଼ା | ଟ ୦ ✓ |
| ଗୁଣବଂଶାରସଗ୍ରହ | ଟ ୦ ✓ |
| ଘଟମଞ୍ଜରୀ | ଟ ୦ ✓ |
| ଜଣାଣସଂଗ୍ରହ | ଟ ୦ ✓ |
| କୃଷିପସଣସ | ଟ ୦ ✓ |
| କୃଷିପାଠ | ଟ ୦ ✓ |

| ପୁସ୍ତକର ନାମ ଓ ମୂଲ୍ୟ | |
|---|---|
| ଷୁହୂଲୂଣି | ଟ ୦ ୶ |
| ମନୋରଞ୍ଜନ | ଟ ୦ /୨ |
| ଦ୍ରୌପଦୀସ୍ୱୟମ୍ବର | ଟ ୦ /୨ |
| କଥାମାଳକା | ଟ ୦ /୨ |
| ଜୀବନରକ୍ଷକ | ଟ ୦ /୨ |
| କରଣତରଙ୍ଗ | ଟ ୦ /● |
| ବହୁର୍ଦ୍ଦଶାକଥା | ଟ ୦ /● |
| ସୂର୍ଯ୍ୟମାହାତ୍ମ୍ୟ | ଟ ୦ /● |
| ହରଅଚଳ୍ଳୀ | ଟ ୦ / |
| ମଧୁସାହୁ ଓ ହରଭେଟସ | ଟ ୦ / |
| ହନୁଅର୍ଜ୍ଜୁନ କଳ | ଟ ୦ / |
| ବେହାରସ | ଟ ୦ / |
| ଗୀତମାଳା | ଟ ୦ / |
| କଲ୍ଲକଲାବର୍ଣ୍ଣନା | ଟ ୦ / |
| ଘରଘରକ୍ଷକ | ଟ ୦ / |
| ଷଟ୍‌ଦର୍ଶନ | ଟ ୦ / |
| ପଣସଂଗ୍ରହ | ଟ ୦ / |
| ଜବାବୁସଲ ଛନ୍ଦ | ଟ ୦ / |
| ଷଡ଼ଋତୁ | ଟ ୦ / |
| ସୁଧାବୃଷ୍ଟିନିଳୟ | ଟ ୦ / |
| ଶୀତଳାସ୍ତୋତ୍ର | ଟ ୦ / |
| ଜଗବନ୍ଧୁତହଣା | ଟ ୦ / |
| ଭକ୍ତସମ୍ଭଳ | ଟ ୦ / |
| ଅର୍ଘ୍ୟବନ୍ଦାପନା | ଟ ୦ / |
| ଶବ୍ଦମାଳା | ଟ ୦ / |
| ପଦ୍ମମଞ୍ଜରୀ | ଟ ୦ ୧୨ |

କଟକ ବାଲୁବଜାର ପୁସ୍ତକାଳୟ । ଶ୍ରୀ ଗୋବର୍ଦ୍ଧନରଥ ।